ISBN-81-237-0782-7

1994 (ଶକାବ୍ଦ 1915)



Yaad Jawaharlal ki *(Oriya)*

ଟ 8.00

ନିର୍ଦ୍ଦେଶକ, ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ଏ-5, ଗ୍ରୀନ୍ ପାର୍କ,
ନୂଆଦିଲ୍ଲୀ – 110 016 କର୍ତ୍ତୃକ ପ୍ରକାଶିତ ।

ନବସାକ୍ଷର ସାହିତ୍ୟମାଳା

# ଜବାହରଲାଲ୍

ଦେସ ରାଜ ଗୋୟଲ

ଅନୁବାଦ

ହେମନ୍ତ କୁମାର ଦାସ



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

# ଅନୁକ୍ରମ

# 1
# ଜବାହର ସୁମରି

କବୀର କହିଛନ୍ତି-

"ହେ କବୀର, ଯେତେବେଳେ ତୁମେ ଜନ୍ମ ହେଲ, ସେତେବେଳେ ସାରା ସଂସାର ହସିଥିଲା, ତୁମେ କିନ୍ତୁ କାନ୍ଦିଥିଲ। ଏମିତି କାମ କରିଯାଅ, ଦିନେ ସାରା ସଂସାର ତୁମ ପାଇଁ କାନ୍ଦିବ। ତୁମେ କିନ୍ତୁ ହସି ହସି ଯିବ।"

କବୀରଙ୍କର ଏଇ ଦୋହା ହେଉଛି, ଗୋଟିଏ ସଫଳ ଜୀବନର ଚାବିକାଠି। ଲୋକେ ସଂସାରକୁ ଆସନ୍ତି, ଖାଆନ୍ତି, ପିଅନ୍ତି, ଆଉ ଦିନେ ବିଦାୟନେଇ ଚାଲି ଯାଆନ୍ତି। ଏମିତି ଜୀବନକୁ ସଫଳ ଜୀବନ କୁହାଯାଇ ନପାରେ। ଏ ହେଉଛି ପୋକ ମାଛିର ଜୀବନ। ମଣିଷ ଅନ୍ୟର କାମରେ ଲାଗିପାରେ। ଏତକ ତା'ର ବାହାଦୁରୀ। ଯିଏ ଲୋକଙ୍କ ପାଇଁ କାମ କରେ, ତାକୁ ହରାଇଲେ ସେମାନେ ଦୁଃଖୀ ହୁଅନ୍ତି। ଆଖିରୁ ଲୁହ ଝରାନ୍ତି। ତାର ଗୁଣ ସୁମରନ୍ତି।

ଏମିତି ଜୀବନ ଥିଲା ଜବାହରଲାଲଙ୍କର। ସେ ନିଜକୁ ସାରା ଭାରତ ସହିତ ମିଶାଇ ଦେଇଥିଲେ। ଭାରତକୁ ଯୋଡ଼ି ଦେଇଥିଲେ ମଣିଷ ସମାଜ ସହିତ। ତାଙ୍କୁ ମନେ ପକାଇଲେ, ନିଜ ଜୀବନ ଗଢ଼ିବା ପାଇଁ ଆମକୁ ବାଟ ଦେଖାଯାଏ।

ଜବାହର ଥିଲେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ। ସ୍ୱାଧୀନ ଆଉ ଗଣତନ୍ତ୍ର ଭାରତର ସ୍ୱାଧିନତା ଲଢ଼େଇରେ ସେ ଆଗୁଆ ଥିଲେ। ସେ ଚାହୁଁଥିଲେ ଭାରତରେ ଲୋକ ଶାସନ। ଅର୍ଥାତ୍ ଭାରତର ଲୋକମାନେ ହିଁ ଏହାର ଶାସନ ଭାର ନିଅନ୍ତୁ। ସେଇଥିପାଇଁ ଭାରତବାସୀ ତାଙ୍କୁ ଆଧୁନିକ ଭାରତର ବିନ୍ଧାଣୀ ବୋଲି କୁହନ୍ତି। ଖାଲି ଭାରତର ଲୋକେ ନୁହେଁ, ସାରା ସଂସାର ବି ଏଇଆ କୁହେ।

ନେହେରୁଙ୍କ ପାଇଁ ଆଜି ଭାରତ ସାରା ସଂସାରରେ ପରିଚିତ। ଗଙ୍ଗାର ନାଁ କୁହନ୍ତୁ, ହିମାଳୟର ନାଁ କୁହନ୍ତୁ, ଅବା ଗାନ୍ଧୀଙ୍କ ନାଁ କୁହନ୍ତୁ, ଆଖି ଆଗକୁ ଆସେ ଭାରତ। ସେମିତି ନେହେରୁଙ୍କ କଥା ଉଠିଲେ ବି ଭାରତ ଆପେ ଆପେ ମନରେ ଭାସି ଉଠେ। ନେହେରୁଙ୍କ କଥା ଆଉ ଭାରତର କଥା ଆଜି ମିଳିମିଶି ଏକାକାର ହୋଇଯାଇଛି।

ଜବାହରଲାଲ ନେହେରୁ ଆଉ ଆଜିର ଭାରତ ଗୋଟିଏ ଆରଟି ସାଙ୍ଗରେ ମିଶିଯାଇଛନ୍ତି। ଗୋଟିକୁ ତେଣୁ ଆରଟିଠାରୁ ଅଲଗା କରି ହେବ ନାହିଁ। ଯିଏ ଜବାହରଲାଲଙ୍କ ଗୁଣ ଗାଏ, ସିଏ ଭାରତର ନୀତି ନିୟମର ଗୁଣ ବି ଗାଏ। ଯେଉଁମାନଙ୍କୁ ଭାରତର ନୀତିନିୟମ ଭଲ ଲାଗେ ନାହିଁ, ସେମାନେ ନେହେରୁଙ୍କର ନିନ୍ଦା କରନ୍ତି। ଯଦି କେହି କୁହେ ଯେ ସେ ନେହେରୁଙ୍କ ଦେଶର ଲୋକ, ତେବେ ତାକୁ ଭାରତବାସୀ ସମସ୍ତେ ଜାଣି ଯାଆନ୍ତି। କାହିଁକି ଏମିତି ହୁଏ? କାରଣ ତ ଗୋଟିଏ। ଜବାହରଲାଲ ଆଉ ଭାରତବାସୀ ଜଣେ ଅନ୍ୟକୁ ବହୁତ ଭଲ ପାଇଛନ୍ତି। ଜବାହରଲାଲ ଭାରତ ଆଉ ଭାରତବାସୀଙ୍କୁ ସବୁଠାରୁ ଅଧିକ ଭଲ ପାଉଥିଲେ। ସବୁଠୁ ବେଶି ସେବା ବି କରୁଥିଲେ। ନିଜ ପରିବାର ପାଇଁ ତାଙ୍କର ଯେଉଁ ମମତା ଥିଲା, ତାହା ସେ ଦେଶବାସୀଙ୍କ ନାମରେ ପାଣି ଛଡ଼ାଇ ଦେଇଥିଲେ। ଦେଶପ୍ରେମ ତାଙ୍କର ଥିଲା ମାନବ ପ୍ରେମର ଆଉ ଏକ ରୂପ। ଭାରତକୁ ସେ ଗଢ଼ିବାକୁ ଚାହୁଁଥିଲେ ସଂସାରରେ ସାର କରି। ସମସ୍ତେ ଭାରତ ଆଡ଼କୁ ଚାହାନ୍ତୁ, ଏତିକି ଥିଲା ତାଙ୍କର ଇଚ୍ଛା।

ଦେଶବାସୀଙ୍କ ସାଙ୍ଗରେ ତାଙ୍କର କିଭଳି ସମ୍ପର୍କ ଥିଲା? କେତେଥର ଜବାହର ନିଜ ଭାଷାରେ ଏଇ ପ୍ରଶ୍ନର ଉତ୍ତର ଦେଇଛନ୍ତି। ଥରେ କହୁ କହୁ ସେ କହିଲେ, "ମୋତେ ଜନତାଙ୍କ ଠାରୁ ବହୁତ ସ୍ନେହ ମିଳିଛି। ସାଧାରଣ ଲୋକେ ହିଁ ମୋତେ ପ୍ରଧାନମନ୍ତ୍ରୀର ଗାଦିରେ ବସାଇଛନ୍ତି। ଏଥିରେ ଦାୟିତ୍ୱ ଯଥେଷ୍ଟ। ଭାରତ ଭଳି ଗୋଟିଏ ବଡ଼ ଦେଶର ପ୍ରଧାନମନ୍ତ୍ରୀ ହେବା ବହୁତ ଦାୟିତ୍ୱପୂର୍ଣ୍ଣ କାମ। ତେବେ ଆପଣମାନେ ମୋତେ ଯେଉଁ ସ୍ନେହ ଆଉ ସଦିଚ୍ଛା ଦେଇଛନ୍ତି, ହୁଏତ ତାହା ଆଉ କୌଣସି ପ୍ରଧାନମନ୍ତ୍ରୀ ପାଇ ନ ପାରନ୍ତି। ଏଥିପାଇଁ ମୁଁ ଆପଣମାନଙ୍କ ନିକଟରେ ଋଣୀ। ଆଜି ଭାରତର ଲକ୍ଷ ଲକ୍ଷ ଜନତାଙ୍କ ହୃଦୟ ଭିତରେ ମୁଁ ଟିକିଏ ଜାଗା ପାଇଛି। ବେଳେବେଳେ ମୁଁ ଏ ବିଷୟରେ ଭାବେ। ମୋ ଜୀବନର ଶେଷ ହୋଇ ଆସିଲାଣି, ତେବେ ମୋ ଭିତରର ସେଇ ପୁରୁଣା ନିଆଁ ଏବେ ବି ସେମିତି ଦହକୁଛି। ଯେତେବେଳେ



ସେ ନିଜେ ନିଜକୁ ଭାରତ ସହ ଏକାତ୍ମ କରିଦେଲେ

ପର୍ଯ୍ୟନ୍ତ ମୋ ଦେହ ଜଳିପୋଡ଼ି ପାଉଁଶ ହୋଇ ନ ଯାଇଛି ସେତେଦିନ ପର୍ଯ୍ୟନ୍ତ ମୁଁ ଜନତାର ସେବା କରୁଥିବି। କାରଣ ଲୋକେ ମୋତେ ଏତେ ସ୍ନେହ ଦେଇଛନ୍ତି, ଆଉ ଭରସା କରିଛନ୍ତି ଯେ, ଏକଥା ନକରି ମୁଁ ରହି ପାରିବି ନାହିଁ।''

ଦେଶପ୍ରେମ, ମମତା ଆଉ ଭରସାର ଏଇ ସମ୍ପର୍କକୁ ନେହେରୁ ସବୁବେଳେ ବଞ୍ଚାଇ ରଖିବାକୁ ଚାହୁଁଥିଲେ। ଦେହ ଛାଡ଼ିବା ପରେ ବି ସେ ମୋକ୍ଷ ଚାହିଁନଥିଲେ। ସ୍ୱର୍ଗରେ ଥାନ ଟିକିଏ ପାଇବା ଲାଗି ପୂଜା ପାଠ ବି କରାଇବା ପାଇଁ କହି ନଥିଲେ। କେବଳ ଏତିକି କହିଥିଲେ, ମୋ ଚିତା ପାଉଁଶରୁ କିଛି ଗଙ୍ଗାରେ ଭସାଇ ଦିଆଯାଉ। ବାକି ଯାହା ରହିଲା, ତାକୁ ଉଡ଼ାଜାହାଜରୁ ସାରା ଦେଶର କ୍ଷେତବାଡ଼ିରେ ବିଞ୍ଚି ଦିଆଯାଉ।''

ମୋକ୍ଷ ମିଳିଯିବ ବୋଲି ନିଜ ଚିତାପାଉଁଶକୁ ସେ ଗଙ୍ଗାରେ ଭସାଇ ଦେବାକୁ କହି ନଥିଲେ। ଗଙ୍ଗା ଆଉ ଯମୁନା ଏ ଦୁଇ ନଦୀ ତାଙ୍କୁ ମା ଭଳି ମନେ ହେଉଥିଲେ। ସେ ଆଲାହାବାଦ୍‌ରେ ଜନ୍ମ ହୋଇଥିଲେ, ଆଉ ସେଇଠି ବଡ଼ ବି ହୋଇଥିଲେ। ପିଲାଦିନରୁ ଏ ନଦୀକୁ ଦେଖୁଥିଲେ। ଏଇଥିରେ ଗାଧୋଉଥିଲେ।

ସେମାନଙ୍କର କଥା ଶୁଣୁଥିଲେ। ଏମାନଙ୍କ ବଢ଼ିବା ଛିଡ଼ିବା ବି ଦେଖୁଥିଲେ। ଏହା ତାଙ୍କୁ ମନେ ହେଉଥିଲା ମମତାମୟୀ ମାଆର ରୋଷ ଆଉ ହସ ଭଳି। ପାଉଁଶ ଗଙ୍ଗାରେ ଭସାଇଦେଲେ, ତା'ଯାଇ ଥାନ ପାଇବ ମା'ର ନିର୍ଭୟ କୋଳରେ। ଏଇଆ ଥିଲା ତାଙ୍କର ବିଚାର।

ଭାରତର ଚଷାପୁଅ ଯେଉଁ ବିଲବାଡ଼ିରେ କାମ କରନ୍ତି, ଚିତାପାଉଁଶ ସେଇଠି ବିଞ୍ଚି ଦିଆଗଲା। ଯେଉଁ ସ୍ନେହ ସଦିଚ୍ଛା କଥା ନେହେରୁଜୀ ବହୁତ ଥର କହୁଥିଲେ, ତାହା ଏଇଠି ସଫଳ ହେଲା ଚଷାଭାଇମାନଙ୍କ ପାଖରେ। ଚାଷୀଙ୍କ ପାଖରେ ସେ କେମିତି ପହଞ୍ଚୁଥିଲେ, ସେ କଥା ଆମେ ପରେ ପଢ଼ିବା। ଏକଥା ଆମେ ଆହୁରି ଜାଣିବା ଯେ, ସେମାନଙ୍କର ସେବା ନେହେରୁଜୀ କେମିତି କରିବାକୁ ଚାହୁଁଥିଲେ। ଏଠି କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ, ମରଣ ପରେ ବି ସେ ଚାଷୀଭାଇଙ୍କ ମେଳରେ ରହିବାକୁ ଚାହୁଁଥିଲେ। ଏ ଦେଶର ମାଟି ସହିତ ମିଶି ଯିବାକୁ ଚାହୁଁଥିଲେ।

ଏମିତି ନେତାଙ୍କୁ ଆମେ କେମିତି ଭୁଲିଯିବା? ଯିଏ ତାଙ୍କୁ ମନେ ନ ରଖିବ ତା'ଠୁ ଦୁର୍ଭାଗା ଆଉ କିଏ ଅଛି? ଜନତାଙ୍କ ପ୍ରତି ଯାହାଙ୍କର ଏତେ ଗଭୀର ସ୍ନେହ, ସେଇ ନେତା ଦେଶର ଜୀବନଧାରା ଉପରେ ମଧ୍ୟ ସେମିତି ଟାଣୁଆ ପ୍ରଭାବ ଛାଡ଼ିଯାଆନ୍ତି। ଭାରତର ଏଭଳି କୌଣସି କଥା ନାହିଁ, ଯାହା ନେହେରୁଙ୍କୁ ଛୁଇଁ ନାହିଁ। ସେଇଥିପାଇଁ ତାଙ୍କୁ ଭୁଲିଯିବା ଅର୍ଥ ହେଉଛି, ନିଜକୁ ଭୁଲିଯିବା। ଆଉ ତାଙ୍କୁ ମନେ ପକାଇବା ଅର୍ଥ ହେଉଛି ନିଜକୁ ନିଜେ ଚିହ୍ନିବା। ଏଥର ତେବେ ଆସନ୍ତୁ, ତାଙ୍କ ଜୀବନର କେତୋଟି ଚିତ୍ର ଦେଖିବା। ତାଙ୍କ କଥାକୁ ବୁଝିବାକୁ ଚେଷ୍ଟା କରିବା। ଏହା ଖାଲି ନେତାଙ୍କୁ ସମ୍ମାନ ଜଣାଇବା ପାଇଁ ନୁହେଁ, ନିଜ ଦେଶର ମୂଳଦୁଆକୁ, ଏହାର ସମସ୍ୟାକୁ ଆଉ ଏହାର ରୂପରେଖକୁ ଚିହ୍ନିବା ପାଇଁ ମଧ୍ୟ ଲୋଡ଼ା।



# 2
# ନେତା ଓ ଜନତା- ସ୍ନେହ ମମତାର ଅଛିଣ୍ଡା ଡ଼ୋରି

ଜନତାଙ୍କ ସହିତ ନେହେରୁଜୀଙ୍କ ସମ୍ପର୍କ କେମିତି ଥିଲା ? ଏ କଥାତ ସେ ନିଜେ ନିଜ ଭାଷାରେ କହି ଦେଇଛନ୍ତି । ନେତା ଆଉ ଜନତାଙ୍କର ଏଇ ଭରସା ଓ ସ୍ନେହ କେମିତି ଥିଲା, କେମିତି ହେଲା- ଏ କଥା ତାଙ୍କ ଜୀବନର ଅନେକ ଘଟଣାରୁ ଜଣା ପଡ଼ିଥାଏ । ସେମିତି କିଛି ଘଟଣା ଆମେ ତଳେ ଦେଉଛୁଁ ।

ଜନତାକୁ ଠକିବାକୁ ସେ ଭାରି ଘୃଣା କରୁଥିଲେ । ଥରେ ଦିଲ୍ଲୀ ପ୍ରଦେଶ କଂଗ୍ରେସ କମିଟି ଗୋଟିଏ ସାଧାରଣ ସଭାର ବ୍ୟବସ୍ଥା କଲେ । ପଣ୍ଡିତଜୀଙ୍କର ଭାଷଣ ଦେବାର କଥା । ତାଙ୍କୁ ସଞ୍ଜ ଛ'ଟା ବେଳକୁ ସମୟ ଦିଆଯାଇଥାଏ । ଏଣେ ସହରରେ ପ୍ରଚାର କରାଯାଉଥାଏ ଯେ, ପଣ୍ଡିତଜୀ ପାଞ୍ଚଟାବେଳେ ଭାଷଣ ଦେବେ । ଜବାହରଲାଲଙ୍କ କାନରେ ଏ କଥାଟା କେମିତି ପଡ଼ିଗଲା । ଠିକ୍ ପାଞ୍ଚଟା ବେଳକୁ ସେ ସଭା ଥାନରେ ପହଞ୍ଚିଗଲେ । ସେଠିକାର କର୍ମୀମାନଙ୍କ ଭିତରେ ହୁଲସ୍ଥୁଲ ପଡ଼ିଗଲା ।

ସଭାପତି କହିଲେ- ''ପଣ୍ଡିତଜୀ, ଆପଣଙ୍କର ଛ'ଟାବେଳେ ଆସିବାର କଥା । ଏବେ ଲୋକେ ଆସିବାକୁ ଆରମ୍ଭ କରୁଛନ୍ତି ।''

ନେହେରୁଜୀ କହିଲେ- ''ପ୍ରଚାର କଲାବେଳେ ତ ପାଞ୍ଚଟା ବେଳ କଥା କୁହାଯାଉଛି ।''

ସଭାପତି କହିଲେ- ''ଲୋକଙ୍କୁ ପାଞ୍ଚଟା ବେଳ କଥା କହିଲେ, ସେମାନେ ଛ'ଟା ବେଳକୁ ଆସନ୍ତି ।''

ନେହେରୁଜୀ ରାଗିଗଲେ । କହିଲେ- ''ଲୋକଙ୍କୁ ଏମିତି ଠକିବା ମୋତେ ମୋଟେ ଭଲ ଲାଗେ ନାହିଁ । ଆଉ ଯଦି ସବୁବେଳେ ଏମିତି ଚାଲିବ, ତେବେ

ଠିକ୍ ସମୟରେ ଆସିବା ଅଭ୍ୟାସଟି ଲୋକଙ୍କର ହେବ କେମିତି ?''

ଜନତାଙ୍କର ସମୟ ଓ ସୁବିଧା କଥା ସେ ବହୁତ ଚିନ୍ତା କରୁଥିଲେ। କେରଳରେ ଘଟିଥିବା ଆଉ ଗୋଟିଏ ଘଟଣାରୁ ତାହା ଜଣାଯାଇଥାଏ। ନିର୍ବାଚନ ପ୍ରଚାର ପାଇଁ ନେହେରୁଜୀ କେରଳ ଯାଇଥାନ୍ତି। ସେ କାର୍‌ରେ ଏର୍ଣ୍ଣାକୁଲମ୍‌ରୁ ତ୍ରିବେନ୍ଦ୍ରମ୍ ଗଲେ। ରାସ୍ତାରେ ଡେ଼ରି ହୋଇଗଲା। ତେଣେ ସଭା ଜାଗାରେ ବହୁତ ଲୋକ ତାଙ୍କୁ ଅପେକ୍ଷା କରିଥାଆନ୍ତି। ନେହେରୁଜୀଙ୍କ ଦେହ ସାରା ଧୂଳିମାଟି ବଲବଲ। ଦିନସାରା ବାଟଚଲା ସାଙ୍ଗକୁ ମଝିରେ ମଝିରେ ସଭା। ନେହେରୁଜୀ ପୂରା ଥକି ଯାଇଥାନ୍ତି। କିଛି ଲୋକ କହିଲେ ଆଗ ଯାଇ ଗାଧୋଇ ପଡ଼ି ସଫା ସୁତୁରା ହୋଇ ପଡ଼ନ୍ତୁ। ଟିକିଏ କିଛି ମୁହଁରେ ଦେଇ ସଭାକୁ ଆସିବେ। ନେହେରୁଜୀ କହିଲେ- ''ମୋ ଥକ୍କାତ ମେଣ୍ଟିଯିବ। ତେବେ ଏତେ ଲୋକ ଘଣ୍ଟା ଘଣ୍ଟା ଧରି ଏଠି ଅପେକ୍ଷା କରିଛନ୍ତି। ଟିକିଏ ମୋ ଭାଷଣ ଶୁଣିବେ। ଏମାନଙ୍କ କଥା କ'ଣ ହେବ ?''

ଏତିକି କହି ସେ ସିଧା ସଭା ଜାଗାରେ ପହଞ୍ଚିଗଲେ। ଡେ଼ରିରେ ଆସିଥିବାରୁ କ୍ଷମା ମାଗିଲେ। ଭାଷଣ ଦେଲେ। ତାପରେ ଯାଇ ଧୁଆଧୋଇ ହେଲେ, ଖିଆପିଆ ସାରି ବିଶ୍ରାମ ନେଲେ।

ଆଉ ଗୋଟିଏ ଘଟଣା ୧୯୩୮ ମସିହାର। ସେତେବେଳେ ନେହେରୁଜୀ କଂଗ୍ରେସର ସଭାପତି। ଗସ୍ତରେ ମାନ୍ଦ୍ରାଜ ଗଲେ। ମୋର ଜଣେ ବନ୍ଧୁ ମୋତେ ଏ କଥା କହିଛନ୍ତି।

ମାନ୍ଦ୍ରାଜ ନଗରପାଳିକା ତରଫରୁ ତାଙ୍କୁ ସ୍ୱାଗତ କରାଯିବାର କଥା। ଷ୍ଟେସନରେ ତାଙ୍କୁ ଟିକିଏ ଦର୍ଶନ କରିବା ଲାଗି ବହୁ ଭିଡ଼। ମୋର ବନ୍ଧୁ ମଧ୍ୟ ସେଠି ପହଞ୍ଚିଗଲେ। ସେତେବେଳେ ତାଙ୍କୁ ଚଉଦ କି ପନ୍ଦର ବର୍ଷ ହୋଇଥିବ। ଦେଖିବାକୁ ଗେଟମ୍‌ଟିଏ। ଗାଡ଼ି ଆସି ପହଞ୍ଚି ଯିବାରୁ ଠେଲାପେଲା ଆରମ୍ଭ ହୋଇଗଲା। ବିଚରା ବନ୍ଧୁ ଧକ୍କା ଖାଇ ଖାଇ ଷ୍ଟେସନ ବାହାର ସଡ଼କ ଉପରେ ପହଞ୍ଚି ଗଲେ। ଭାରି ଭାଙ୍ଗି ପଡ଼ିଥାଆନ୍ତି। ନେତାଙ୍କୁ ଟିକିଏ ଦେଖିବାପାଇଁ ବଡ଼ ଆଶା ଥିଲା। ତା' ଆଉ ହେଲା ଭଳି ଦିଶୁନାହିଁ।

ଏତିକିବେଳେ ଭିଡ଼ ଷ୍ଟେସନ ବାହାରକୁ ଚାଲିଆସିଲା। ମଝିରେ ଗୋଟିଏ ଖୋଲାଗାଡ଼ି, ସେଥିରେ ନେହେରୁଜୀ। ଭିଡ଼ପାଇଁ ଗାଡ଼ି ଆଗକୁ ଯାଇପାରୁ ନଥାଏ। ସଡ଼କ ବି ଦେଖାଯାଉ ନଥାଏ। ପୋଲିସ୍ ରାସ୍ତା ସଫା କରିବାପାଇଁ ଲାଠି ଚଳାଇଲେ।



ଏ କଥା ଦେଖି ନେହେରୁଜୀ ଗାଡ଼ିରୁ ଓହ୍ଲାଇ ପଡ଼ିଲେ। ଲାଠି ଚଳାଇବାକୁ ପୋଲିସ୍‌କୁ ମନା କଲେ। ଆଗକୁ ଆସି ବଡ଼ ପାଟିରେ କହିଲେ- ''ଆପଣମାନେ ରାସ୍ତା ନଛାଡ଼ିଲେ, ମୁଁ ସହର ଭିତରକୁ ଯିବି କେମିତି? ଆପଣମାନେ କ'ଣ ଚାହୁଁ ନାହାନ୍ତି ଯେ, ମୁଁ ଆପଣଙ୍କ ସହରକୁ ଯାଏ?''

ଏତିକି କଥା ମନ୍ତ୍ର ଭଳି କାମ କଲା। ଭିଡ଼ ପଛକୁ ହଟିଗଲା। ଗାଡ଼ିପାଇଁ ରାସ୍ତା ସଫା ହୋଇଗଲା। ମୋ ବନ୍ଧୁଙ୍କର ଏଥିରେ ବଡ଼ ଲାଭ ହେଲା। ଭିଡ଼ ହଟିଗଲା ବେଳକୁ ସେ ଆଗ ଧାଡ଼ିରେ ଅଛନ୍ତି। ନେତାଙ୍କୁ ଦେଖିବାର ଆଶା ତାଙ୍କର ପୂରଣ ହୋଇଗଲା। ଏଇଥିପାଇଁ ସେ ଏ ଘଟଣାଟିକୁ କେବେ ଭୁଲିନଥିଲେ। ଜବାହରଲାଲଙ୍କର ଯାଦୁକରୀ ଶକ୍ତିକୁ ସେ ବିଶ୍ୱାସ କରୁଥିଲେ।

ଜନତାଙ୍କ ଉପରେ ନେହେରୁଜୀଙ୍କର ଏଇ ଯାଦୁ ବେଶ୍ କାମ ଦେଖାଇ ଥିଲା। ଏହାର ବି କାରଣ ଅଛି। ସେ ଜନତାଙ୍କୁ ବେଶ୍ ବିଶ୍ୱାସ କରୁଥିଲେ। ସେମାନଙ୍କୁ କେବେ ଧୋକା ଦେଉନଥିଲେ। ପୁଣି ବିନା କାରଣରେ କେବେହେଲେ ସେମାନଙ୍କୁ କଷ୍ଟ ଦେଉନଥିଲେ।

ପ୍ରଧାନମନ୍ତ୍ରୀଙ୍କ ସୁରକ୍ଷା ଦାୟିତ୍ୱରେ ଥିବା ପୋଲିସ୍ ଅଧିକାରୀ ମାନଙ୍କୁ ସେ କହୁଥିଲେ- "ଯଦି ଜନତା ମୋର ସୁରକ୍ଷା ନ ଚାହିଁବ, ତେବେ ଆପଣମାନେ କେବେ ତା କରିପାରିବେ ନାହିଁ।" ସେ ନିଜ ଆଉ ଜନତା ଭିତରେ ପୁଲିସ୍‌କୁ ନାକ ଗଳେଇବାକୁ କେବେହେଲେ ଦେଉନଥିଲେ।

ତୃତୀୟ ଘଟଣା ହେଉଛି ୧୯୫୪ ମସିହାର। ଆମେରିକାର ରାଷ୍ଟ୍ରପତି ଭାରତ ଆସିଥାଆନ୍ତି। ତାଙ୍କ ନାମ ଆଉଜେନ୍ ହାୱାର୍। ଭାରତର ପରମ୍ପରା ଅନୁସାରେ ତାଙ୍କୁ ଜୋରଦାର୍ ସ୍ୱାଗତ କରାଗଲା। ଉଡ଼ାଜାହାଜ ପଡ଼ିଆଠାରୁ ରାଷ୍ଟ୍ରପତି ଭବନ ପର୍ଯ୍ୟନ୍ତ ତାଙ୍କୁ ଗୋଟିଏ ଖୋଲା କାର୍‌ରେ ନିଆଗଲା। ସେ କେବଳ ରାଷ୍ଟ୍ରପତି କିମ୍ବା ପ୍ରଧାନମନ୍ତ୍ରୀଙ୍କର ଅତିଥି ନଥିଲେ। ସେ ଥିଲେ ସାରା ଭାରତର ଅତିଥି। ନେହେରୁଜୀ ଚାହୁଁଥିଲେ କେମିତି ବେଶୀରୁ ବେଶୀ ଲୋକ ତାଙ୍କୁ ଦେଖନ୍ତୁ। ଆସିଥିବା ଅତିଥି ବି କେମିତି ବେଶୀରୁ ବେଶୀ ଲୋକଙ୍କୁ ଦେଖିବେ, ଏକଥା ମଧ୍ୟ ସେ ଚାହୁଁଥିଲେ। ଏମିତି ମୁହାଁମୁହିଁ ଦେଖାଚାହାଁରେ ଭଲ ବୁଝାମଣା ହୁଏ।

ଆଇଜେନ ହାୱାରଙ୍କ ସାଙ୍ଗରେ ଖୋଲା କାର୍‌ରେ ନିଜେ ନେହେରୁଜୀ ବି ଥିଲେ। ପଛେ ପଛେ ଚାଲିଥିଲା ବିରାଟ ଏକ କାର୍‌ର ଶୋଭାଯାତ୍ରା। ସେଥିରେ ବିଭିନ୍ନ ପଦାଧିକାରୀ ଆଉ ଅତିଥିଙ୍କ ସହିତ ଆସିଥିବା ଲୋକମାନେ ବସିଥିଲେ। ନେତା ଦୁହିଁଙ୍କୁ ଦେଖିବାପାଇଁ ରାସ୍ତାରେ ବହୁତ ଭିଡ଼। କନଟ ପ୍ଲେସରେ ପୁଣି ଭିଡ଼ ଆହୁରି ବେଶୀ। ନେତାଙ୍କର ଶୋଭାଯାତ୍ରା ଯେତେବେଳେ ସେଠି ପହଞ୍ଚିଲା, ସେତେବେଳେ ସମୁଦ୍ର ଢେଉ ଭଳି ଲୋକେ ଚାରିଆଡୁ ମାଡ଼ି ଆସିଲେ। ଆଗକୁ ଯିବା ଅସମ୍ଭବ ହୋଇପଡ଼ିଲା। ପୋଲିସ୍ ଜନତାଙ୍କୁ ଧକ୍କା ମାରି ଆଉ ବାଡ଼ିରେ ଠେଲି ହଟାଇବାକୁ ଲାଗିଲେ।

ନେହେରୁଜୀଙ୍କୁ ଏହା ମୋଟେ ଭଲ ଲାଗିଲା ନାହିଁ। ଧାଡ଼ିଭାଙ୍ଗି ଲୋକେ ଯେ ସଡ଼କ ମଝିକୁ ମାଡ଼ି ଆସୁଛନ୍ତି ଏକଥା ତାଙ୍କୁ ଭାରି ବାଧିଲା। ପୋଲିସ୍‌ର ଲାଠି ଚଳାଇବା ତ ଆହୁରି ବେଶୀ ଖରାପ ଲାଗିଲା। ଡେଇଁପଡ଼ି ସେ କାର୍ ଇଞ୍ଜିନ୍ ଘୋଡ଼ଣି ଉପରେ ଉପରେ ଠିଆ ହୋଇ ପଡ଼ିଲେ। ଲାଠି ଚଳାଇବା ବନ୍ଦ କରିବାକୁ ପୋଲିସ୍‌କୁ କହିଲେ। ଜନତାଙ୍କୁ କହିଲେ ଯେ, ସେମାନେ ପଛକୁ ଘୁଞ୍ଚିଯାଆନ୍ତୁ। ଭିଡ଼ ଭାଙ୍ଗିବାକୁ ଯେତେବେଳେ ଡେ଼ରି ହେଲା, ସେତେବେଳେ ସେ କାର୍‌ରୁ ଡେଇଁ ପଡ଼ି ସଡ଼କ ମଝିରେ ଠିଆ ହୋଇଗଲେ। ନିଜେ ଲୋକଙ୍କୁ ହଟାଇବା କାମରେ ଲାଗିଗଲେ। ଭିଡ଼ ଯେତେବେଳେ ତାଙ୍କୁ ସଡ଼କ ଉପରେ

ଦେଖିଲା, ସେତେବେଳେ ଆପେଆପେ ପଛକୁ ହଟିଗଲା । ସଡ଼କ ସଫା ହୋଇଗଲା । ନେହେରୁଜୀ ଏଥର କାର୍‌ରେ ନିଜ ଜାଗାରେ ଯାଇ ବସିଲେ । କାର୍‌ର ଶୋଭାଯାତ୍ରା ଆଗେଇ ଚାଲିଲା ।

ପୋଲିସ୍ ଚକିତ ହୋଇ ଅନାଇ ରହିଲେ । ଅଧିକାରୀମାନେ ହଇରାଣ । ଆମେରିକାରୁ ଆସିଥିବା ଅତିଥିମାନଙ୍କ ମୁହଁରୁ ତ ଆଶ୍ଚର୍ଯ୍ୟରେ କଥା ବାହାରୁ ନଥାଏ । ନିଜ ସୁରକ୍ଷା କଥା ନଭାବି ପ୍ରଧାନମନ୍ତ୍ରୀ ନିଜେ ଭିଡ଼ ଭିତରେ ପଶିଯିବେ । ଯୋଉ ଭିଡ଼ ପୋଲିସ୍‌ର ଲାଠିକୁ ମାନୁ ନଥିଲା, ଜବାହରଙ୍କ ପଦେ ମିଠା କଡ଼ା କଥାରେ ଆଖି ପିଛୁଳାକେ ସଫା । କେବଳ ନେହେରୁଜୀ ହିଁ ଏଭଳି କରାମତି ଦେଖାଇ ପାରୁଥିଲେ । କାରଣ ଜନତାଙ୍କୁ ସେ ବାନ୍ଧିଥିଲେ ସ୍ନେହର ଅଛିଣ୍ଡା ଡ଼ୋରିରେ, ସେଠି ଭୟର ଥାନ ନଥିଲା । ଏ ପୁଣି ଏଭଳି ଏକ ସମ୍ପର୍କ, ଯାହା ପାଟିରେ ନ କହିଲେ ମଧ ଦୁଇପକ୍ଷ ବୁଝି ଯାଉଥିଲେ ।

ଜବାହରଲାଲ ଏମିତି ଚିନ୍ତା କରୁଥିଲେ ନିଜ ଦେଶବାସୀଙ୍କ ପାଇଁ । ଏମିତି ନେତା କୋଟିକେ ଗୋଟିଏ ମିଳିବା କଷ୍ଟ ।



# ୩
# ଏକୋଇର ବଳ।

ଜବାହରଲାଲଙ୍କର ଜନ୍ମ ୧୪ ନଭେମ୍ବର ୧୮୮୯ ମସିହାରେ। ତାଙ୍କ ବାପା ମୋତିଲାଲ ନେହେରୁ ଥିଲେ ସେ କାଳର ଜଣେ ଜଣାଶୁଣା ଓକିଲ। ଜବାହରଙ୍କ ଜନ୍ମର ତିନିବର୍ଷ ପୂର୍ବରୁ ସେ କାନପୁରରୁ ଆଲାହାବାଦ ଆସିଥିଲେ। ଆସିବାମାତ୍ରେ ତାଙ୍କର ପେଶା ଜମି ଯାଇଥିଲା। ସେ କାଳରେ ଜମିଦାର, ତାଲୁକଦାର, ରାଜା ଆଉ ନବାବ୍ ମାନଙ୍କ ଭିତରେ ଖୁବ୍ ମକଦ୍ଦମା ହେଉଥିଲା। ମୋତିଲାଲ ଥିଲେ ବେଶ୍ ଟାଣୁଆ ଓକିଲ। ନିଜ ନିଜର ମକଦ୍ଦମା ତାଙ୍କୁ ଦେବା ଲାଗି ସବୁବେଳେ ଭିଡ଼ ଲାଗି ରହିଥିଲା। ମୋଟା ରକମର ଫିସ୍ ବି ଆଦାୟ ହେଉଥିଲା। ଜବାହରଲାଲଙ୍କ ଘରେ ଜାଣ ଧନ ବର୍ଷା ହେଉଥିଲା।

ମୋତିଲାଲଙ୍କ ଘରେ ଟଙ୍କା ପଇସାର ଅଭାବ ନଥିଲା। ସେ ଧନ ମୋତିଲାଲ ନିଜେ ରୋଜଗାର କରିଥିଲେ। ତାଙ୍କ ବାପ ଗୋସବାପ ମୋଗଲ ଦରବାରରେ ବେଶ୍ ଭଲ ଚାକିରୀ କରୁଥିଲେ। ଦିଲ୍ଲୀରେ ଘରଦ୍ୱାର ଜମିବାଡ଼ି ଥିଲା। ତେବେ ସେ ସବୁ ୧୮୫୭-୫୮ ରେ ନଷ୍ଟ ହୋଇଗଲା। ଇଂରେଜ ସେନାବାହିନୀର ଭାରତୀୟ ସିପାହୀମାନେ ଇଂରେଜମାନଙ୍କୁ ତଡ଼ି ବାହାଦୁର ଶାହ ଜାଫରଙ୍କୁ ଦିଲ୍ଲୀ ସିଂହାସନରେ ବସାଇଦେଲେ। ତେବେ ଇଂରେଜମାନେ ପୁଣି ଦିଲ୍ଲୀ ଅଧିକାର କରିନେଲେ। ସେତେବେଳେ ବହୁତ ପରିବାର ସର୍ବସ୍ୱାନ୍ତ ହୋଇ ଦିଲ୍ଲୀ ଛାଡ଼ିଲେ। ସେଥି ଭିତରେ ଥିଲେ ମୋତିଲାଲଙ୍କ ବାପା ଗଙ୍ଗାଧର ନେହେରୁଙ୍କ ପରିବାର। ଏମାନେ ଦିଲ୍ଲୀ ଛାଡ଼ି ଆଗ୍ରାରେ ଯାଇ ରହିଲେ।

ମୋତିଲାଲଙ୍କ ଜନ୍ମ ହେଲା ଆଗ୍ରାରେ। ତାଙ୍କ ଜନ୍ମର ତିନିମାସ ପୂର୍ବରୁ ବାପା ଦେହ ଛାଡ଼ି ସାରିଥିଲେ। ମୋତିଲାଲଙ୍କ ଭାଇମାନେ ତାଙ୍କୁ ଭଲଭାବେ

ପାଠ ପଢ଼ାଇଥିଲେ। ମୋତିଲାଲ ଥିଲେ ଭାରି ବୁଦ୍ଧିଆ। ସେ ଖୁବ୍ ବେଶି ଡ଼ିଗ୍ରୀ ସିନା ପାଇ ନଥିଲେ, ତେବେ ଅଳ୍ପଦିନରେ ଓକିଲାତିରେ ବେଶ୍ ନାଁ କରିଯାଇଥିଲେ। ପ୍ରଥମେ କାନପୁରରେ, ତା'ପରେ ଆଲାହାବାଦରେ।

ମୋତିଲାଲ କେବଳ ଠୁଳ କରିବା ପାଇଁ ଧନ କମାଉ ନଥିଲେ। ଭଲ ଖାଇବା, ଭଲ ପିନ୍ଧିବା ଭଲ ଘରେ ରହିବା ଥିଲା ତାଙ୍କର ମୂଳ ଲକ୍ଷ୍ୟ। ନିଜକୁ ସେ ଅନ୍ୟମାନଙ୍କ ଠାରୁ ନିଉନ ମନେକରୁ ନଥିଲେ। ଅନ୍ୟମାନଙ୍କ ଆଖିରେ ତଳେ ପଡ଼ିଯିବା କଥାଟାକୁ ସେ ମୋଟେ ମାନୁ ନଥିଲେ। ସହରର ଯେଉଁଠି ସେ ଘର କିଣିଲେ, ସେଠି ବଡ଼ ବଡ଼ ସରକାରୀ ଅଧିକାରୀମାନେ ରହୁଥିଲେ। ସେମାନଙ୍କ ସହିତ ତାଳଦେଇ ଚାଲିଲା ଭଳି ଧନୀ ଭାରତୀୟମାନେ ବି ରହୁଥିଲେ। ନିଜ ଘରର ନାଁ ସେ ରଖିଲେ 'ଆନନ୍ଦ ଭବନ'। ଏଥିରୁ ଜଣାଯାଉଛି ଯେ ସେ ନିଜ ଘରେ ସୁଖ ଆଉ ଆନନ୍ଦର ସବୁ ସାମଗ୍ରୀ ଜୁଟାଇ ରଖିବାକୁ ଚାହୁଁଥିଲେ। ସେଥିପାଇଁ ସେ ମେହନତ କରି ଟଙ୍କା କମାଉଥିଲେ।



ମୋତିଲାଲ ନେହେରୁ ପରିବାର ସହିତ

ଜବାହର ଥିଲେ ତାଙ୍କର ତୃତୀୟ ସନ୍ତାନ। ତାଙ୍କ ଆଗରୁ ଦୁଇଟି ପୁଅ ହୋଇ ଅକାଳରେ ଝଡ଼ି ପଡ଼ିଥିଲେ। ଏଥିପାଇଁ ଜବାହରଙ୍କ ପ୍ରତି ମୋତିଲାଲଙ୍କର ସ୍ନେହ କିଭଳି ଥିଲା, ତାହା ସମସ୍ତେ ଅନୁମାନ କରି ପାରିବେ। ତଥାପି ପୁଅ ଚଗଲା ହୋଇଯାଉ, ଏକଥା ମୋତିଲାଲ ଚାହୁଁନଥିଲେ। ତାଙ୍କପାଇଁ ଭଲ ଖାଇବା, ଭଲ ପିନ୍ଧିବାର ଯୋଗାଡ଼ ଥିଲା। ପଢ଼ିବାକୁ ବହି ଥିଲା। ସେବା କରିବାକୁ ଚାକର ବାକର ଥିଲେ, ଯିବାଆସିବା ପାଇଁ ଘୋଡ଼ାଗାଡ଼ି ଥିଲା। ତେବେ ଖରାପ କାମ କଲେ, ସେଥିପାଇଁ ଦଣ୍ଡ ବି ମିଳୁଥିଲା।

ଜବାହର ପାଞ୍ଚ ଛଅ ବର୍ଷର ହୋଇଥାଆନ୍ତି। ଦିନେ ବାପାଙ୍କ ଶୋଇବା ଘରକୁ ଗଲେ। ଦେଖିଲେ ତାଙ୍କ ଟେବୁଲ୍ ଉପରେ ଦୁଇଟି ସୁନ୍ଦର କଲମ ଥୁଆ ହୋଇଛି। ପିଲାମନ, ଲୋଭ ହେଲା। ନିଜକୁ ସମ୍ଭାଳି ପାରିଲେ ନାହିଁ। ସେଥିରୁ ଗୋଟିଏ ନେଇ ଆସିଲେ। ମୋତିଲାଲ ଏକଥା ଜାଣି ତାଙ୍କୁ ବହୁତ ପିଟିଲେ। ଜବାହରଙ୍କୁ ବହୁ କଷ୍ଟ ହେଲା ସତ, ତେବେ ବାପାଙ୍କ ପାଇଁ ତାଙ୍କର ସମ୍ମାନ ମୋଟେ କମିଲା ନାହିଁ।

ଘରେ ଆଉ ବାହାରେ ମୋତିଲାଲଙ୍କର ବହୁତ ନାଁ ଥିଲା। ତାଙ୍କ ବୈଠକ ଖାନା ଲୋକରେ ଭର୍ତ୍ତି ହୋଇ ରହୁଥିଲା। ସେଠି ମକଦ୍ଦମା କଥା, ଦେଶର ହାଲଚାଲ୍, ଦୁନିଆଁର ଖବର ଏମିତି ନାନା କଥା ପଡୁଥିଲା। ତେବେ ସେଠି ପିଲାଙ୍କ ପାଇଁ କିଛି ନଥିଲା। ପୁଅ ସେଠିକି ଖୁବ୍ କମ୍ ଯାଇ ପାରୁଥିଲେ। ତାଙ୍କର ଅଧିକ ସମୟ କଟୁଥିଲା ମା'ଙ୍କ ସାଙ୍ଗରେ।

ମା ସ୍ୱରୂପରାଣୀ ପୂଜାପାଠ, ବ୍ରତ ଉପବାସରେ ସମୟ କଟାଉଥିଲେ। ଘର ଭିତରେ ନାରୀମାନଙ୍କର ଦୁନିଆଁ ଥିଲା ସମ୍ପୂର୍ଣ୍ଣ ଅଲଗା। ସେଠି ରାମାୟଣ, ମହାଭାରତ, ପୁରାଣ ଚର୍ଚ୍ଚା ହେଉଥିଲା। ପୂଜା ପାର୍ବଣ ଥିଲା। ଧର୍ମ ବିଶ୍ୱାସ ଥିଲା।

ଏସବୁ ମୋତିଲାଲଙ୍କ ବାହାର ଦୁନିଆଠାରୁ ପୂରା ଅଲଗା ଥିଲା। ସେ ଧର୍ମ ବିରୋଧୀ ନଥିଲେ ସତ, ତେବେ ଅନ୍ଧ ବିଶ୍ୱାସ, କୁ-ସଂସ୍କାର ଠାରୁ ସବୁବେଳେ ଦୂରେଇ ରହୁଥିଲେ। ସେତେବେଳେ ଯିଏ ବିଦେଶ ଯାଉଥିଲା ଫେରିଲେ ତାକୁ ପ୍ରାୟଶ୍ଚିତ କରିବାକୁ ପଡୁଥିଲା। ମୋତିଲାଲ ଏହାକୁ ଭଣ୍ଡାମି ମନେ କରୁଥିଲେ। ସେ କେବେ ସେମିତି କରି ନଥିଲେ। ସେ ବିଦେଶ ଗଲେ। ବାହୁଡ଼ି ଆସି ପ୍ରାୟଶ୍ଚିତ କଲେ ନାହିଁ। ସନାତନ ପନ୍ଥୀମାନେ ତାଙ୍କୁ ଜାତିରୁ ଅଟକ କଲେ। ନିଆଁପାଣି ବନ୍ଦ କଲେ।



ମୋତିଲାଲ ନେହେରୁ, ସ୍ୱରୂପ ରାଣୀ ଓ ବାଳକ ଜବାହରଲାଲ

ବାପାଙ୍କର ଏଇ ବିଚାରଧାରାର ପ୍ରଭାବ ଜବାହରଙ୍କ ଉପରେ ପଡ଼ିଲା। ପୂଜାପାର୍ବଣରେ ନୂଆ ଲୁଗା ପିନ୍ଧିବାକୁ ସେ ଖୁବ୍ ଭଲ ପାଉଥିଲେ। ଘରେ ପିଠାପଣା ହେଉଥିଲା, ସାହି ପଡ଼ିଶାରେ ବଣ୍ଟା ଯାଉଥିଲା, ଏସବୁ ତାଙ୍କୁ ବେଶ୍ ଭଲ ଲାଗୁଥିଲା। ତେବେ ଧର୍ମ ନାମରେ ଭଣ୍ଡାମିକୁ ସେ ମୂଳରୁ ଘୃଣା କରୁଥିଲେ।

ବଡ଼ ଘରର ପିଲାଙ୍କ ଭଳି ଜବାହରଙ୍କ ପିଲାଦିନର ପଢ଼ାପଢ଼ି ନିଜ ଘରେ ହୋଇଥିଲା। ତାଙ୍କ ପାଇଁ ଘରେ ଜଣେ ଇଂରେଜ ଶିକ୍ଷକ ରଖାଯାଇଥିଲା। ତାଙ୍କଠୁ ସେ ସାହିତ୍ୟ, ଦର୍ଶନ ଆଉ ବିଜ୍ଞାନ କଥା ଶିଖିଲେ। ଘରେ ବହୁ ପ୍ରକାରର ବହି ଥିଲା। ସେ ସବୁ ପଢ଼ିବାର ସୁଯୋଗ ମିଳୁଥିଲା। ସେଥିରୁ ଜାଣିବାର ଆଗ୍ରହ ବଢ଼ିଲା।

ମୋତିଲାଲଙ୍କର ଜଣେ ଗୁମାସ୍ତା ଥିଲେ। ତାଙ୍କ ନାଁ ମୁବାରକ ଅଲ୍ଲୀ। ସେ ବଦାୟୁଁ ଅଞ୍ଚଳର ଲୋକ। ୧୮୫୭ ମସିହାର ଗଣ୍ଡଗୋଳରେ ତାଙ୍କର ପରିବାର ବହୁ ଦୁଃଖ କଷ୍ଟ ପାଇଥିଲେ। ତାଙ୍କ ଘରେ ପିଲାପିଲି ନଥିଲେ। ତେଣୁ ଜବାହର ବେଶୀ ସମୟ ତାଙ୍କ ପାଖରେ କଟାଉଥିଲେ। ତାଙ୍କର ମା'ଙ୍କ ଆଖି ଆଗରେ ଇଂରେଜମାନେ ତାଙ୍କ ବାପାଙ୍କୁ ଫାଶୀ ଦେଇଥିଲେ। ସେ ଜବାହରଙ୍କୁ ଭାରତ ଇତିହାସର କାହାଣୀ ଶୁଣାଉଥିଲେ। ଇଂରେଜମାନଙ୍କ ଅତ୍ୟାଚାର କଥା କହୁଥିଲେ। ତାଙ୍କ ପାଖରେ ରହିବାକୁ ଜବାହରଙ୍କୁ ଖୁବ୍ ଭଲ ଲାଗୁଥିଲା।

ଷୋହଳ ବର୍ଷ ବୟସରେ ଜବାହରଙ୍କୁ ପଢ଼ାପଢ଼ି ପାଇଁ ବିଲାତ ପଠାଇ ଦିଆଗଲା। ମୋତିଲାଲ ଇଂଲଣ୍ଡର ସବୁଠାରୁ ଜଣାଶୁଣା ସ୍କୁଲ ହାରୋରେ ତାଙ୍କର ନାମ ଲେଖାଇ ଦେଲେ। ଇଂଲଣ୍ଡର ବହୁ ପ୍ରଧାନମନ୍ତ୍ରୀ ସେଇଠି ପଢ଼ିଥିଲେ। ହାରୋ ପିଲାମାନଙ୍କ ପାଇଁ ସେତେବେଳର ଗୋଟିଏ ଭଲ ସ୍କୁଲ ଥିଲା। ଜବାହର ପଢ଼ାପଢ଼ିରେ ମନ ଲଗାଇ ଦେଲେ। ତାଙ୍କର ଶିକ୍ଷକମାନେ ଏଥିପାଇଁ ତାଙ୍କୁ ବହୁତ ଭଲ ପାଉଥିଲେ। ତେବେ ଜବାହରଙ୍କ ମନ ଖାଲି ପଢ଼ାପଢ଼ିରେ ନ ଥିଲା। ନିଜ ଦେଶରେ ସେତେବେଳେ ଯେଉଁ ଘଟଣାମାନ ଘଟୁଥିଲା, ଜବାହର ସେସବୁ ଲକ୍ଷ୍ୟ କରୁଥିଲେ।

ଦେଶରେ ସେତେବେଳେ 'ବଙ୍ଗଭଙ୍ଗ' ଆନ୍ଦୋଳନ ଚାଲିଥିଲା। ଇଂରେଜ ଲାଟ କର୍ଜନ ବଙ୍ଗ ଦେଶକୁ ଦୁଇ ଭାଗ କରି ଦେଇଥିଲେ। ଭାରତବାସୀ ଏଭଳି ବିଭାଜନର ବିରୋଧ କରୁଥିଲେ। କ୍ରମେ ଆନ୍ଦୋଳନ ସାରା ଦେଶରେ ବ୍ୟାପିଗଲା। 'ବନ୍ଦେ ମାତରମ୍' ଧ୍ୱନି ଗଳି ଗଳିରେ ଶୁଣାଗଲା। ଜବାହର ଏସବୁ ଘଟଣା ଜାଣିବାକୁ ଚାହୁଁଥିଲେ। ଭାରତରୁ ଖବର କାଗଜ ମଗାଉଥିଲେ। ସବୁ କିଛି

ବୁଝିବାକୁ ଚେଷ୍ଟା କରୁଥିଲେ। ଏତେ ଦିନଯାଏ ସେ ରାଜନୀତିକୁ ଆସି ନଥିଲେ ସିନା, ତେବେ ଧୀରେ ଧୀରେ ଦେଶ ଭକ୍ତିର ଅଙ୍କୁର ତାଙ୍କ ମନ ଭିତରେ ମୁଣ୍ଡ ଟେକି ଉଠୁଥିଲା।

ହାରୋ ବିଦ୍ୟାଳୟର ପଢ଼ା ଶେଷ ହୋଇଗଲା। ତା'ପରେ ସେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ନାଁ ଲେଖାଇଲେ। ସେଠି ସେ ବିଜ୍ଞାନ ପଢ଼ିଲେ। ସେଇଠୁ ସେ ଲଣ୍ଡନରେ ଓକିଲାତି ପାଶ୍‌କରି ବାରିଷ୍ଟର ହୋଇଗଲେ। ଜବାହର ବିଲାତର ସ୍କୁଲ କଲେଜର ଜୀବନକୁ ପସନ୍ଦ କରୁନଥିଲେ। ସେ ଭାବୁଥିଲେ ଏସବୁ ଖାଲି ଉପର ଠାଉରିଆ ଶିକ୍ଷା। ଏଥିରେ ସାର୍ଥକତା କିଛି ନାହିଁ। ଖେଳକୁଦ, ଆମୋଦ ପ୍ରମୋଦରେ ବି ସେ ଭାଗ ନେବାକୁ ଚାହିଁଲେ। ସେଥିରେ ବି ତାଙ୍କର ସନ୍ତୋଷ ଆସିଲା ନାହିଁ।

ତେବେ ସେକାଳର ନୂଆ ବିଚାରଧାରା ଆଡ଼େ ଜବାହର ଟାଣି ହୋଇଗଲେ। ବିଜ୍ଞାନର ନୂଆ ନୂଆ ଆବିଷ୍କାର କଥା ଜାଣିବାକୁ ତାଙ୍କ ମନ ସର୍ବଦା ଡ଼ାକୁଥିଲା। ସମାଜବାଦର ବିଚାର ତାଙ୍କୁ ଭଲ ଲାଗୁଥିଲା। ଏସିଆର ଲୋକେ ୟୁରୋପୀୟମାନଙ୍କ ଠାରୁ ଆଗଉଛନ୍ତି, ଏକଥା କେଉଁଠି ପଢ଼ିଦେଲେ, ତାଙ୍କ ମନ ଖୁସିରେ ନାଚି ଉଠୁଥିଲା। ୧୯୦୬ ମସିହାରେ ଜାପାନ ଯେତେବେଳେ ଋଷକୁ ଜିଣିଗଲା, ସେତେବେଳେ ଗର୍ବରେ ଜବାହରଙ୍କ ଛାତି ଫୁଲି ଉଠିଥିଲା। ଏଇଟି ଥିଲା ପଛୁଆ ଲୋକଙ୍କର ଆଗକୁ ବଢ଼ିବାର ଗୋଟିଏ ଭଲ ଦୃଷ୍ଟାନ୍ତ।

ଜବାହର ଥିଲେ ଜଣେ ଧନୀ ପିତାଙ୍କର ଏକମାତ୍ର ସନ୍ତାନ। ସେ ଜଣେ ଗର୍ବୀ ଆଉ ଅହଙ୍କାରୀ ଲୋକ ହୋଇ ପାରିଥାଆନ୍ତେ, ତେବେ ଭୋଗ ବିଳାସର ସମସ୍ତ ସୁବିଧା ଥାଇ ବି ଲୋକ-ସେବା ଆଡ଼କୁ ତାଙ୍କ ମନ ଢଳିଲା। ଆଜି ଆମେ ନେହେରୁଜୀଙ୍କୁ ଆଦର କରୁଛୁ। ସେ କ'ଣ ଖାଲି ବିଳାତରେ ପଢ଼ିଥିଲେ ବୋଲି ନା ଧନୀ ବାପର ପୁଅ ଥିଲେ ବୋଲି? ଆମେ ତାଙ୍କୁ ଶ୍ରଦ୍ଧା କରୁଛୁ ଏଇଥିପାଇଁ ଯେ, ଗୋଡ଼ ଖସିବାର ସମସ୍ତ ସୁଯୋଗ ତାଙ୍କ ପାଖରେ ଥିଲେ ସୁଦ୍ଧା, ସେ ବାଟ ହୁଡ଼ିନଥିଲେ। ସୁଖ ସୁବିଧାର ଜୀବନ ଛାଡ଼ି ଦୁଃଖ କଷ୍ଟର ଜୀବନକୁ ବରଣ କରି ନେଇଥିଲେ। ଆଉ ଏହା ସେ କରିଥିଲେ ନିଜ ଦେଶବାସୀଙ୍କ ପାଇଁ।



# 4
# ଆଦର୍ଶ ଯୋଡ଼ି

''ସ୍ତ୍ରୀ ସୁନ୍ଦରୀ ଚାହୁଁଚ ନା ଶିକ୍ଷିତା ଚାହୁଁଚ ?'' ମୋତିଲାଲ ନିଜ ପୁଅ ଜବାହରଙ୍କୁ ପଚାରିଲେ ।

ପୁଅ ଜବାବ ଦେଲେ- ''ଆପଣଙ୍କର ନାକ ଦରକାର କି ଆଖି ? ଆପଣଙ୍କ ପ୍ରଶ୍ନ ଠିକ୍ ଏମିତି । ଦୁଇଟିଯାକ ମୋର ଲୋଡ଼ା ।''

ପୁଅ ବାହା ହେଉ, ଘରକୁ ବୋହୂ ଆସୁ । ଏକଥା ସବୁ ବାପା ମା ଚାହାଁନ୍ତି । ପୁଣି ପୁଅ ଯଦି ଏକୋଇର ବଳା ହୋଇଥାଏ, ଆଉ ଘରେ ଧନ ରତ୍ନର ଅଭାବ ନଥାଏ, ତେବେ ଏ ଇଚ୍ଛା ବହୁତ ବଢ଼ିଯାଏ । ଜବାହରଙ୍କର ବାପମାଙ୍କର ଠିକ୍ ଏଇଆ ହୋଇଥିଲା ।

ବାପ ମା ଦୁଇଜଣ ଯାକ ଚାହୁଁଥିଲେ ଯେ ବୋହୂ ଭାରତର ହୋଇଥାଉ । ସେମାନେ ଭାବୁଥିଲେ, ଭାରତର ଝିଅଟିଏ ତାଙ୍କ ପୁଅକୁ ଅଧିକ ସୁଖ ଦେଇପାରିବ । ଯେତେବେଳେ ଜବାହର ବିଲାତରେ ପଢୁଥିଲେ, ସେତେବେଳେ ତାଙ୍କୁ ଏଇ କଥା ଜଣାଇ ଦିଆଗଲା । ଡ଼ର ଥିଲା, କାଳେ ପୁଅ ବିଦେଶରେ ବାହା ହୋଇ ପଡ଼ିବ ।

ଏଭଳି ଭାବିବାର କିଛି କାରଣ ନଥିଲା । ଜବାହର ସେତେବେଳେ ନିଜ ବିବାହ ବିଷୟରେ ଭାବିବାକୁ ବି ଚାହୁଁ ନଥିଲେ । ତାଙ୍କର କେବଳ ଗୋଟିଏ ଚିନ୍ତା । ଦୁନିଆରେ କ'ଣ ସବୁ ଘଟୁଛି, କିଭଳି ସେ ସବୁ ଜାଣିବେ, ଆଉ ସେଥିରୁ କିଛି ଶିଖିବେ । ସେ କହୁଥିଲେ, ଖାଲି ପିଲା ଜନ୍ମ କରିବା ବା ପାଳିବା ଜୀବନର ଲକ୍ଷ୍ୟ ନୁହେଁ । ସେ ତହିଁରୁ କିଛି ଅଧିକ କରିବାକୁ ଚାହୁଁଥିଲେ । ଏଥିପାଇଁ ପ୍ରଥା ଅନୁସାରେ ଘର ସଂସାର ପ୍ରତି ମନ ଦେବାରେ ତାଙ୍କର



କମଳା ନେହେରୁ ଓ ଜବାହରଲାଲ

ବିଶେଷ ରୁଚି ନଥିଲା । ମଣିଷ ଜୀବନକୁ କେମିତି ଭଲ ଭାବରେ ବୁଝିବେ, ଏହା ଥିଲା ତାଙ୍କର ଇଚ୍ଛା ।

ଏହା ବୋଲି ଯେ ସେ ବାହା ହେବାକୁ ମନା କରୁଥିଲେ, ଏକଥା ନୁହେଁ । ଅବଶ୍ୟ ଚାହୁଁଥିଲେ, ଏମିତି ଏକ ପତ୍ନୀ ଯିଏ ତାଙ୍କୁ ଭଲ ଭାବରେ ବୁଝି ପାରିବ । ନିଜର ମତ ସେ ବାପାଙ୍କୁ ଜଣାଇ ଦେଲେ । ମୋତିଲାଲଙ୍କ ନିଜ ଇଚ୍ଛା ମଧ ସେଇଆ ଥିଲା । ବୋହୂ ଖୋଜିବାର ଭାର ସେ ନିଜ ଉପରକୁ ନେଲେ । କମଳା ହେଉଛନ୍ତି ଦିଲ୍ଲୀର ଏକ କାଶ୍ମିରୀ ପରିବାରର ଝିଅ । ମୋତିଲାଲ ବୋହୂ ଭାବରେ ତାଙ୍କୁ ବାଛିଲେ । ବାହାଘର ବଡ଼ ଜାକଜମକରେ ହେଲା । ଦିନଟି ଥିଲା ଆଠ ଫେବୃଆରୀ ୧୯୧୬ ମସିହା ଆଉ ତିଥି ହେଉଛି ବସନ୍ତ ପଞ୍ଚମୀ ।

କମଳା ଥିଲେ ଜବାହରଙ୍କ ଠାରୁ ଦଶବର୍ଷ ସାନ । ଖୁବ୍ ବେଶୀ ପାଠ ପଢ଼ି ନଥିଲେ । ତେବେ ତାଙ୍କ ମନରେ ବି ଦେଶସେବା କରିବାର ଇଚ୍ଛା ଥିଲା । ଜବାହର ତାଙ୍କୁ ବହୁତ ଭଲ ପାଉଥିଲେ ସତ, ତେବେ ତାଙ୍କ ମନର ଇଚ୍ଛାଟିକୁ ଠିକ୍ ବୁଝିପାରି ନଥିଲେ । ଏଥିଲାଗି ଆରମ୍ଭରୁ କିଛିଦିନ ତାଙ୍କର ପରିବାର ଜୀବନ ଆଉ ରାଜନୀତି- ଏ ଦୁଇଟି ଅଲଗା ଅଲଗା ବାଟରେ ଚାଲିଲା ।

ସେତେବେଳେ ଜବାହର ପ୍ରାୟ ରାଜନୀତି କାମରେ ବ୍ୟସ୍ତ ରହୁଥିଲେ । କମଳାଙ୍କ ସାଙ୍ଗରେ ବେଶୀ ସମୟ କଟାଇ ପାରୁ ନଥିଲେ । ତେବେ ସେ କମଳାଙ୍କୁ ମନରେ ରଖିଥିଲେ । କମଳା ତାଙ୍କର ଦୁର୍ବଳତା ଥିଲେ ବୋଲି କୁହାଯାଇପାରିବ ନାହିଁ । ଜବାହର ନିଜେ ଲେଖିଛନ୍ତି, ''ମୋତେ ତାଙ୍କର ସାହାଯ୍ୟ ସମର୍ଥନ ନ ମିଳିଥିଲେ, ମୁଁ କ'ଣ କରିଥାନ୍ତି ? ସେ ମୋର ମନ ଆଉ ଦେହକୁ ନୂଆ ଶକ୍ତି ଯୋଗାଇ ଦେଉଥିଲେ ।''

ଦୁଇଜଣଯାକ କୋଡ଼ିଏ ବର୍ଷରୁ ଅଧିକ କାଳ ସାଥୀ ହୋଇ ରହିଲେ । ଏ ସମୟରେ ରାଜନୀତି ପାଇଁ ଜବାହରଙ୍କୁ ଅଧିକ ସମୟ ଦେବାକୁ ପଡୁଥିଲା । ଥରକୁ ଥର ଜେଲ୍ ଯିବାକୁ ହେଉଥିଲା । ତଥାପି କମଳା ନିଜ ସ୍ୱାମୀଙ୍କ ଜୀବନକୁ ଭଲ ଭାବରେ ପ୍ରଭାବିତ କରି ପାରିଥିଲେ । ନିଜ ଭାଷାରେ ହିଁ ଜବାହର ତାହା ସ୍ୱୀକାର କରିଛନ୍ତି ।

ସେ ଲେଖିଛନ୍ତି, ''ସେ ଭାରତୀୟ ନାରୀ ଜାତିର, ସାରା ନାରୀ ସମାଜର ପ୍ରତୀକ ହୋଇଗଲେ । ଭାରତ ବିଷୟରେ ମୁଁ ଯାହା ଭାବୁଥିଲି- ଏହାର ଶକ୍ତି ଆଉ ଦୁର୍ବଳତା ଏ ସବୁଥିରେ କମଳା ମିଶିଯାଉଥିଲେ । ଠିକ୍ ସେମିତି ଶକ୍ତି

ଆଉ ଦୁର୍ବଳତା। ଠିକ୍ ସେମିତି ଧରାଛୁଆଁର ବାହାରେ, ବୁଝାମଣାର ବାହାରେ- ଗୋଟିଏ ଗୋଳମାଳିଆ କଥା।''

ସେତେବେଳେ ଜବାହରଙ୍କର ଯେଉଁ ଚିତ୍ର ବିକ୍ରି ହେଉଥିଲା, ସେଥି ଭିତରୁ ଗୋଟିକରେ କମଳା ବି ତାଙ୍କ ସାଙ୍ଗରେ ଥିଲେ। ଉପରେ ଲେଖା ହୋଇଥିଲା ''ଆଦର୍ଶ ଯୋଡ଼ି''।

ଅବଶ୍ୟ ସେମାନେ ଏକାଭଳି ନଥିଲେ କି ଏକାଭଳି ଭାବନା ଚିନ୍ତା ବି କରୁନଥିଲେ। ବରଂ ଦୁହିଁଙ୍କର ଚିନ୍ତା ଆଉ କାମ କରିବାର ଧାରା ଥିଲା ଅଲଗା। ଦୁହେଁ କଳି କରୁଥିଲେ। ପରସ୍ପର ଉପରେ ରାଗ ବି କରୁଥିଲେ। ତେବେ ଦୁହେଁ ଦୁହିଁକୁ ବେଶ୍ ସମ୍ମାନ ଦେଉଥିଲେ। ଗୋଟିଏ ବିଷୟରେ ଦୁହିଁଙ୍କର ମତ ମିଳୁଥିଲା। ଦୁହିଁଙ୍କ ଆଖିରେ ଜୀବନର ନୂଆ ରୂପ, ନୂଆ ମହକ ସନ୍ତୋଷ ଭରି ଦେଉଥିଲା। ଏମିତି ଜୀବନ ଦୁହିଁଙ୍କୁ ଭଲ ଲାଗୁଥିଲା।

ଦେଶ ସେବା ପାଇଁ କମଳାଙ୍କ ମନରେ ଯେଉଁ ଆଗ୍ରହ ଥିଲା, ଜବାହର ତା' ଜାଣିପାରିଲେ ୧୯୩୦-୩୧ ମସିହାବେଳକୁ। ଲବଣ ସତ୍ୟାଗ୍ରହ ବେଳେ ଦୁହେଁ ପାଖାପାଖି କାମ କରିବାକୁ ଲାଗିଲେ। ପାଦରେ ପାଦ ମିଳାଇ ଆନ୍ଦୋଳନରେ ଭାଗ ନେଉଥିଲେ। ଏଥିରୁ ଜବାହର ଏକ ନୂଆ ସୁଖ ପାଉଥିଲେ।

କେତେମାସ ଏମିତି ଏକା ସାଙ୍ଗରେ କାମ ଚାଲିଲା। ଅଳ୍ପ ଦିନ ଭିତରେ ସବୁ କଂଗ୍ରେସୀ ଧରା ହୋଇଗଲେ। ମହିଳାମାନେ ସେମାନଙ୍କର ଅଧାକାମକୁ ପୂରା କରିବା ପାଇଁ ଆଗେଇ ଆସିଲେ। ନେହେରୁ ପରିବାରର ମହିଳାମାନେ ଥିଲେ ସବୁଠୁ ଆଗୁଆ। ମୋତିଲାଲଙ୍କୁ ଏସବୁ ଖୁବ୍ ଭଲ ଲାଗିଲା ନାହିଁ। କାରଣ ଘରର ବୋହୂ ଝିଅ ପଦାରେ କାମ କରନ୍ତୁ, ଏକଥା ସେ ଚାହୁଁ ନଥିଲେ। ତେବେ ଜବାହର ଏଥିରେ ବହୁତ ଖୁସି ହେଲେ।

ବିଶେଷ କରି କମଳାଙ୍କ କାମରେ ଜବାହର ବେଶ୍ ଆନନ୍ଦିତ ହେଲେ। ନିଜ ପୁସ୍ତକ ''ଭାରତ ଆବିଷ୍କାର''ରେ ସେ ଲେଖିଛନ୍ତି, ''ଏ ଗଣ୍ଡଗୋଳରେ କମଳା ବେଶ୍ ସାହସ ଦେଖାଇଲେ। ତାଙ୍କ କାମ ଦେଖିଲା ଭଳି ଥିଲା। ଆଲାହାବାଦର ସବୁ ନେତା ବନ୍ଦୀ ହୋଇ ସାରିଥିଲେ। ଆନ୍ଦୋଳନ ଚଳାଇବା ଭାର କମଳାଙ୍କ ଉପରେ ପଡ଼ିଲା। ତାଙ୍କର ଏ ବିଷୟରେ କିଛି ଧାରଣା ନଥିଲା। ତେବେ ଏ ଅଭାବକୁ ସେ ନିଜ କାମ କରିବାର ପଟୁତା ଦ୍ୱାରା ପୂରଣ କରିଦେଲେ। ଅଳ୍ପ କେଇଟା ମାସରେ ଆଲାହାବାଦ ତାଙ୍କ ପାଇଁ ଗର୍ବ କରିବାକୁ ଲାଗିଲା।''

ଜାନୁଆରୀ ୧୯୩୧ ରେ ନିଜେ କମଳା ଜେଲ୍ ଗଲେ। ଏତିକିବେଳେ

ଜଣେ ସାମ୍ବାଦିକ ତାଙ୍କଠୁ ଜନତାଙ୍କ ପାଇଁ ଗୋଟିଏ ବାର୍ତ୍ତା ମାଗିଲେ। କମଳା କହିଲେ, "ମୁଁ ଭାରି ଖୁସି। ନିଜ ସ୍ୱାମୀଙ୍କ ବାଟରେ ଯାଉଥିବାରୁ ମୋର ଗର୍ବର ସୀମା ନାହିଁ। ମୋର ଆଶା ଲୋକେ ଆମର ପତାକାକୁ ନଇଁବାକୁ ଦେବେ ନାହିଁ।"

ଜେଲ୍‌ରୁ ବାହାରି ଜବାହର ପତ୍ନୀ ଆଉ ଝିଅ ଇନ୍ଦିରାକୁ ନେଇ ଶ୍ରୀଲଙ୍କା ଗଲେ। ପତିପତ୍ନୀଙ୍କ ପାଇଁ ଏହା ଥିଲା ପ୍ରଥମ ଓ ଶେଷ ଛୁଟି, ଯାହା ସେମାନେ ଏକାଠି କଟାଇଥିଲେ। ଜବାହରଙ୍କୁ ଲାଗିଲା ଏଇ ଜୀବନ ପାଇଁ ସେ ଏତେ ଦିନ କାମ କରୁଥିଲେ।

ତେବେ ଏମିତି ଦିନ ଆଉ ମିଳିଲା ନାହିଁ। ରାଜନୀତି ତାଙ୍କୁ ପୂରାପୂରି ଗ୍ରାସ କରି ନେଇଥିଲା। କମଳାଙ୍କର ସ୍ୱାସ୍ଥ୍ୟ ମଧ୍ୟ ଭଲ ରହୁ ନଥିଲା। ସେ ପ୍ରାୟ ବେମାର ରହୁଥିଲେ। ୧୯୨୬ରେ ଜବାହର ତାଙ୍କୁ ପ୍ରଥମ ଥର ଚିକିତ୍ସାପାଇଁ ୟୁରୋପ ନେଇ ଯାଇଥିଲେ। ସେଠୁ ଫେରି କେତେବେଳେ ଜେଲ୍ ଯାଉଥିଲେ ତ ବାହାରେ ଥିଲାବେଳେ ସାରାଦେଶରେ ଘୂରି ବୁଲୁଥିଲେ।

କମଳା ସବୁ ଜାଣୁଥିଲେ। ତାଙ୍କ ପାଇଁ ଦେଶ କାମରେ ବାଧା ପଡୁ, ଏହା ସେ ଚାହୁଁନଥିଲେ। ଥରେ କଥା ଉଠିଲା, ଯଦି ଜବାହର ରାଜନୀତିରୁ ଅଲଗା ରହନ୍ତି, ତେବେ ତାଙ୍କୁ ଜେଲ୍‌ରୁ ଛାଡ଼ି ଦିଆଯାଇପାରେ। ସେ କମଳାଙ୍କର ଦେଖାଶୁଣା କରିପାରିବେ। ସେମିତି ଅବସ୍ଥାରେ କଇଦୀମାନଙ୍କୁ ଛାଡ଼ି ଦିଆଯାଏ। ତାକୁ ପାରୋଲ କୁହାଯାଏ। ସେତେବେଳେ ଜବାହର ପାରୋଲ୍‌ରେ ଆସିଲେ। କମଳା କହିଲେ, "ଏସବୁ କ'ଣ ଶୁଣାଯାଉଛି?" ଜବାହର କହିଲେ- "ମୁଁ ସେସବୁ କିଛି କରିବି ନାହିଁ।" ଏତିକି ଶୁଣି କମଳା ବହୁତ ଖୁସି ହେଲେ।

କମଳା ଚାହୁଁଥିଲେ, ଜବାହର ତାଙ୍କର ପାଖେ ପାଖେ ଥାଆନ୍ତୁ। ତେବେ ଏକଥା ସେ କେବେ ଭାବୁନଥିଲେ ଯେ, ଏଥିପାଇଁ ଜବାହର ଦେଶ କାମ ଛାଡ଼ିଦିଅନ୍ତୁ ଅବା ନିଜ ମତ ବଦଳାନ୍ତୁ। ଜବାହର ଏକଥା ଜାଣିଥିଲେ। ଏହା ତାଙ୍କ ଉପରେ ବେଶ୍ ପ୍ରଭାବ ପକାଇଥିଲା। ଏଥିରୁ ସେ ଶକ୍ତି ସଂଗ୍ରହ କରୁଥିଲେ।

ଏମିତି ଦେଖିବାକୁ ଗଲେ ବିବାହ ସୁଦ୍ଧା ଦେଶ ସେବାରେ ଜବାହରଙ୍କୁ ସାହାଯ୍ୟ ହିଁ କରିଥିଲା। କମଳାଙ୍କର ତ୍ୟାଗ, ଧୈର୍ଯ୍ୟ, ସାହସ, ଆଉ କର୍ମଠତା ଜବାହରଙ୍କୁ ଶକ୍ତି ଯୋଗାଇ ଦେଉଥିଲା।

# 5
# ଗାନ୍ଧୀଙ୍କ ଯାଦୁ

ନେହେରୁଙ୍କ କଥା ଉଠିଲେ ମହାତ୍ମା ଗାନ୍ଧୀଙ୍କ କଥା ଆପେ ଆପେ ଆସିଯିବ। ଦୁଇଟି ଯାକ ନାଁ ଏକା ସାଙ୍ଗରେ ନିଆଯାଏ। ଭବିଷ୍ୟତରେ ବି ଏ ଦୁହେଁ ଜଣେ ଆଉ ଜଣଙ୍କ ସହିତ ଏମିତି ମିଳିକରି ରହିବେ। ଭାରତର ସ୍ୱାଧୀନତା ଲଢ଼େଇରେ ଏ ଦୁଇ ମହାପୁରୁଷ ଥିଲେ ସବୁଠାରୁ ଆଗୁଆ। ଦୁନିଆଁକୁ ଯୁଦ୍ଧ ମୁକ୍ତ କରି ରଖିବାପାଇଁ ଯେଉଁ ଆନ୍ଦୋଳନ ସେଠି ମଧ୍ୟ ଏଇ ଏକାକଥା। ଗାନ୍ଧୀ ଆଉ ନେହେରୁଙ୍କ ବିଚାର ବାଟ ଦେଇ ଶାନ୍ତିର ପଥ ବାହାରିଥାଏ।

ଜବାହର ଗାନ୍ଧୀଙ୍କ ଦ୍ୱାରା ଭଲ ଭାବରେ ପ୍ରଭାବିତ ହୋଇଥିଲେ। କେବଳ ଗାନ୍ଧୀଙ୍କ ପାଇଁ ନେହେରୁଙ୍କୁ ରାଜନୀତି ବେଶ୍ ଭଲ ଲାଗୁଥିଲା। ରାଜନୀତିକୁ ଗାନ୍ଧୀ ଆସିବାପରେ ନେହେରୁ ଭାବୁକ ହୋଇଗଲେ। ତାଙ୍କର ଭାଷା କବିତା ହୋଇଗଲା। ସେ ଲେଖିଲେ, ''ଦମକାଏ ତାଜା ପବନ ଭଳି ଗାନ୍ଧୀ ଆସିଲେ। ଆମେ ସବୁ ଅଳସ ଭାଙ୍ଗି ଉଠି ଲମ୍ବା ନିଶ୍ୱାସ ଟାଣିଲୁ। ସେ ଥିଲେ ସୂର୍ଯ୍ୟ କିରଣ ଭଳି ଉଜ୍ଜ୍ୱଳ। ସେଥିରେ ଆମ ଆଖିରୁ ମଇଳା ବାହାରି ଯାଇଥିଲା। ସେ ଏଭଳି ତୋଫାନ ଭଳି ଥିଲେ, ଯିଏ କି ସବୁ ଓଲଟ ପାଲଟ କରି ରଖି ଦେଉଥିଲେ। ସେ ପୁଣି ଲୋକଙ୍କର ଭାବିବାର ଧାରାକୁ ସବୁଠାରୁ ଅଧିକ ବଦଳାଇ ଦେଇଥିଲେ।''

ଯେତେବେଳେ ଗାନ୍ଧୀଙ୍କୁ ହତ୍ୟା କରାଗଲା, ସେତେବେଳେ ସୁଦ୍ଧା ନେହେରୁଙ୍କ ଭାଷାରୁ ଏମିତି ଭାବୁକତା ଝରି ପଡ଼ିଥିଲା। ଆଗରୁ ତାଙ୍କ ଭାଷାରେ ଯେଉଁ ଉତ୍ସାହ ବାରି ହୋଇ ପଡୁଥିଲା, ଏଥର ତା' ବଦଳରେ ଘୋର ପୀଡ଼ା ଝରିପଡୁଥିଲା। ଦୁଃଖ ଏଇଥିପାଇଁ ଯେ ସେ ଏଥର ଆଉ ପରାମର୍ଶ ପାଇଁ ଗାନ୍ଧୀଙ୍କ ପାଖକୁ

ପାଇଁ ଯାଇ ପାରିବେ ନାହିଁ। ତେବେ ଗାନ୍ଧୀ ଯେଉଁ ଆଲୋକ ଦେଖାଇଲେ, ସେ ଅନନ୍ତ, ଅପାର ଆଉ ଅମର। ନିଜର ବେତାର ଭାଷଣରେ ନେହେରୁଜୀ କହିଲେ-

''ଆମ ଭିତରୁ ସେଇ ଆଲୋକ ଶିଖା ଚାଲିଯାଇଛି, ଏହା କହିବା ଉଚିତ ହେବ ନାହିଁ। ଆମ ଦେଶରେ ଏ ଯେଉଁ ଆଲୋକ ପ୍ରକଟିତ ହୋଇଥିଲା, ଏହା କିଛି ସାଧାରଣ ପଦାର୍ଥ ନୁହେଁ। ଏତେ ବର୍ଷ ଧରି ଆମେ ଯାହାଠୁଁ ଆଲୋକ ପାଇଛୁଁ, ଆଗାମୀ ବର୍ଷ ମାନଙ୍କରେ ମଧ ତାହା ସେମିତି ଝଲସୁଥିବ। ହଜାର ହଜାର ବର୍ଷ ଧରି ଦେଶ ତାକୁ ଦେଖୁଥିବ। ସାରା ଦୁନିଆ ବି ଦେଖିବ। ଅନେକ ହୃଦୟକୁ ତହିଁରୁ ଶାନ୍ତି ମିଳିବ। ଏ ଆଲୋକ କେବଳ ଆଜିର ନୁହେଁ, ବହୁ ପୂର୍ବର। ଏହା ହେଉଛି ସତ୍ୟର ସେଇ ଝଲକ; ଯାହା ଅମର ଆଉ ଅନନ୍ତ। ସେ ହିଁ ଆମକୁ ଠିକ୍ ବାଟ ଦେଖାଇବ। ଭୁଲ ତ୍ରୁଟି କରିବାରୁ ଦୂରେଇ ରଖିବ। ଏଇ ସନାତନ ଦେଶକୁ ସ୍ୱାଧୀନତା ଆଡ଼କୁ ନେଇ ଯିବ।''

ଗାନ୍ଧୀଜୀଙ୍କର ପ୍ରଭାବ ଜବାହରଙ୍କ ଉପରେ ଯାଦୁ ଭଳି କାମ କରୁଥିଲା। ତାଙ୍କର କାମ, ତ୍ୟାଗ ଆଉ କର୍ମଠତା ଦେଖି ଜବାହରଙ୍କର ରାଜନୀତିରେ ରୁଚି ବଢ଼ିଗଲା। ଯଦି ଗାନ୍ଧୀଜୀ ଆସି ନଥାନ୍ତେ, ତେବେ ହୋଇପାରେ, ଜବାହରଲାଲ ରାଜନୀତିରେ ଏତେ ସକ୍ରିୟ ଭାବରେ ଭାଗ ନେଇ ନଥାନ୍ତେ।

ଜବାହରଲାଲ ଗାନ୍ଧୀଙ୍କଠାରୁ କୋଡ଼ିଏ ବର୍ଷ ସାନ ଥିଲେ। ଗାନ୍ଧୀଜୀ ଜନ୍ମ ହୋଇଥିଲେ ୧୮୬୯ ମସିହାରେ। ଜବାହରଙ୍କ ଜନ୍ମ ୧୮୮୯ ମସିହାରେ। ବୟସର ଏ ଯେଉଁ ଫରକ୍, ତାହା ସହଯୋଗ ପାଇଁ ବାଧକ ହେଲା ନାହିଁ। ଜବାହର ଗାନ୍ଧୀଜୀଙ୍କୁ ବହୁତ ସମ୍ମାନ କରୁଥିଲେ। ଗାନ୍ଧୀଜୀ ମଧ ଜବାହରଙ୍କୁ ଯଥେଷ୍ଟ ସ୍ନେହ କରୁଥିଲେ।

ସମ୍ମାନ ଆଉ ସ୍ନେହର ଏଇ ସଙ୍ଗମ ଗଙ୍ଗା ଯମୁନାର ପବିତ୍ର ସଙ୍ଗମ ଭଳି ଥିଲା। ନଦୀର ସଙ୍ଗମରେ ପାଣିର ସ୍ରୋତ ବଢ଼ିଯାଏ। ପ୍ରକୃତ ସମ୍ମାନ ଆଉ ପ୍ରକୃତ ସ୍ନେହର ମିଳନରେ ବିଚାରର ସ୍ରୋତ ସେମିତି ବଢ଼େ। ଜବାହର ଆଉ ଗାନ୍ଧୀ ଏକାଠି କାମ କରିଥିଲେ। କିନ୍ତୁ ସେମାନେ ଗୋଟିଏ ବିଷୟକୁ ଭାବୁଥିଲେ, ନିଜ ନିଜର ସ୍ୱଭାବ ଅନୁସାରେ।

ଦୁହିଁଙ୍କ ଭାବନା ସଦାବେଳେ ଏକା ଭଳି ନଥିଲା। ତେବେ ଦୁହିଁଙ୍କର ପରସ୍ପରର ଆନ୍ତରିକତା ଉପରେ ପୂରା ଭରସା ଥିଲା। ଏହି କାରଣରୁ ଦୁହେଁ କେବେହେଲେ ଦୂର ଛଡ଼ା ହୋଇ ରହି ପାରିଲେ ନାହିଁ। ବିଚାର ଅଲଗା ହେଲେ

ମଧ୍ୟ ଦୁହେଁ ନିଜ ନିଜ କଥା ସଫା କହି ଦେଉଥିଲେ। ଠିକ୍ ଭୁଲର ନିଷ୍ପତ୍ତି କେତେଥର ଜୀବନର ଅନୁଭବ ଉପରେ ଛାଡ଼ି ଦେଉଥିଲେ।

ଗାନ୍ଧୀଜୀଙ୍କ ସହିତ କାମ କରିବା ସମ୍ପର୍କରେ ଜବାହର ନିଜ 'ଆତ୍ମକଥା'ରେ ଲେଖିଛନ୍ତି, "ଗାନ୍ଧୀଜୀଙ୍କୁ ବୁଝିବା ଭାରି କଠିନ। ଆଜିର ମଣିଷ ପାଇଁ ତାଙ୍କର ଭାଷା ଅବୁଝା ମନେ ହେଉଥିଲା। ତେବେ ଆମର ମନେ ହେଉଥିଲା, ସେ ଜଣେ ମହାପୁରୁଷ। ଭାରି ବିଚିତ୍ର ମହାପୁରୁଷ, ଆଉ ଜଣେ ନେତା। ତାଙ୍କୁ ବିଶ୍ୱାସ କରି, ଆମେ ଜାଣ ଖଣ୍ଡିଏ ଖାଲି ଚେକ୍ ଦେଇଦେଲୁ। ନିଜକୁ ତାଙ୍କ ଠାରେ ସମର୍ପଣ କରିଦେଲୁ, ଅନ୍ତତଃ ସଂଘର୍ଷ ଚାଲୁଥିବା ଯାଏ।''

ଥରେ ଗାନ୍ଧୀଜୀ ଆଉ ଜବାହରଲାଲଙ୍କର ମତଭେଦର ବହୁତ ଆଲୋଚନା ହେଉଥାଏ। ମତଭେଦ ତ ଥିଲା। ଏଥିପାଇଁ ସେମାନେ ଆପଣା ଆପଣା ଭିତରେ ଚିଠି ଲେଖା ଲେଖି ବି କରିଥିଲେ। ସେ ବିଷୟରେ ଗାନ୍ଧୀଜୀ 'ହରିଜନ'ରେ ଲେଖିଲେ, ''ମୁଁ ଜବାହରଲାଲଙ୍କ ବିରୁଦ୍ଧରେ ଠିଆ ହୋଇଛି, ଏ କଥା ଭାବିପାରୁନାହିଁ।



ଗାନ୍ଧୀଜୀ ଓ ନେହେରୁ

ସେମିତି ସେ ମୋ ବିରୁଦ୍ଧରେ ଠିଆ ହେବା କଥା ଭାବିବା କଷ୍ଟ। ଆମେ ଗୋଟିଏ କଥାରେ ମୁହାଁମୁହିଁ ହୋଇପାରୁ। ଆମେ ଆମର ଆଦର୍ଶକୁ ବଞ୍ଚାଇ ରଖିବା ପାଇଁ ଦୁହେଁ ଦୁହିଁକୁ କେତେ ସ୍ନେହ କରିପାରୁ ? ନିଜ ଲକ୍ଷ୍ୟରେ ପହଞ୍ଚିବା ପାଇଁ ଯଦି କେବେ ମନେ ହୁଏ ଯେ, ଆମେ ଅଲଗା ହୋଇଯାଉଛୁ, ତେବେ ତା' ଅଳ୍ପ ସମୟ ପାଇଁ। ଦୁନିଆ ଦେଖିବ ଯେ, ଆମେ ପୁଣି ଏକା ସାଙ୍ଗରେ କାମ କରୁଛୁଁ।''

ଗାନ୍ଧୀଜୀ ଜବାହରଲାଲଙ୍କୁ ନିଜର ଉତ୍ତରାଧିକାରୀ ବାଛିଥିଲେ। ଏ କଥାର ଅର୍ଥ ମଧ୍ୟ ସେ ନିଜେ ବୁଝାଇ କହିଲେ-

''ଏହାର ଅର୍ଥ ହେଉଛି, ମୁଁ ଯେତେବେଳେ ନଥିବି, ସେ ମୋର ସ୍ଥାନ ଗ୍ରହଣ କରିବେ। ସେ ମୋର କାମ କରିବା ଧାରାକୁ କେବେ ସେମିତି ଗ୍ରହଣ କରି ନେଇ ନାହାନ୍ତି। ଖୋଲାଖୋଲି ଆଲୋଚନା ବି କରିଛନ୍ତି। କଂଗ୍ରେସ ପୂରାପୂରି ମୋ ଅକ୍ତିଆରରେ ନଥିଲା। ତଥାପି ତା' ଉପରେ ମୋର ପ୍ରଭାବ ସବୁଠାରୁ ଅଧିକ ଥିଲା। ଜବାହରଲାଲ ସେଇ କଂଗ୍ରେସର ନୀତି ନିୟମକୁ ପୂରାପୂରି ପାଳନ କଲେ। ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ଭଳି ଲୋକ ଅଛନ୍ତି ଯେ କି ମୋର ସବୁ କଥା ମାନନ୍ତି, କେବେ କୌଣସି ପ୍ରଶ୍ନ କରନ୍ତି ନାହିଁ। ତେବେ ସେ ଉତ୍ତରାଧିକାରୀ ହୋଇ ନପାରନ୍ତି। ସମସ୍ତେ ଜାଣନ୍ତି, ଯେ କାମ କରିବାର ଯେଉଁ ଶକ୍ତି ଜବାହରଲାଲଙ୍କର ଅଛି, ତାହା ଅନ୍ୟ କାହାରି ନାହିଁ। ଆଉ ଏକଥା ମଧ୍ୟ ମୁଁ କହିଛି ଯେ, ଯେତେବେଳେ ମୁଁ ନଥିବି, ସେତେବେଳେ ଆଜି ତାଙ୍କ ସହିତ ମୋର ଯେଉଁ ମତଭେଦ ଅଛି, ତା ବି ରହିବ ନାହିଁ।''

ଜବାହର ଗାନ୍ଧୀଜୀଙ୍କୁ ପ୍ରଥମ ଥର ପାଇଁ ଦେଖିଲେ ଡ଼ିସେମ୍ବର ୧୯୧୫ ମସିହାରେ ବମ୍ବେ କଂଗ୍ରେସ ଅଧିବେଶନରେ। ପୁଣି ଦେଖାହେଲା ତା' ପର ବର୍ଷ ଲକ୍ଷ୍ନୌ କଂଗ୍ରେସରେ। ସେତେବେଳେ ଗାନ୍ଧୀଜୀ ଭାରତର ରାଜନୀତିରେ ଭାଗ ନେଉ ନଥିଲେ। ସେ ଦକ୍ଷିଣ ଆଫ୍ରିକାରେ କଳାଗୋରା ଭେଦଭାବ ବିରୁଦ୍ଧରେ ଲଢ଼େଇ କରି ସଫଳ ହୋଇ ସାରିଥିଲେ। ସେଠାରେ ଭାରତୀୟମାନଙ୍କ ଉପରେ ହେଉଥିବା ଅତ୍ୟାଚାର ବନ୍ଦ କରାଇଥାନ୍ତି। ଜବାହର ତାଙ୍କ କାମ ଦ୍ୱାରା ବେଶ୍ ପ୍ରଭାବିତ ହୋଇ ଥାଆନ୍ତି। ତେବେ ସେ ତାଙ୍କର ଖୁବ୍ ପାଖକୁ ଆସି ନଥିଲେ।

ଗାନ୍ଧୀଜୀ ଯେତେବେଳେ ଚମ୍ପାରଣର ଚାଷୀ ଭାଇମାନଙ୍କ ପାଇଁ ଲଢ଼ିଲେ, ସେତେବେଳେ ଜବାହର ତାଙ୍କର ନିକଟକୁ ଯିବା କଥା ଭାବିଲେ। ତାଙ୍କର ମନ ହେଲା ଗାନ୍ଧୀଜୀଙ୍କ ସହିତ କାମ କରିବାକୁ। ଏହା ପରେ ୧୯୧୯ ରେ



ମୋତିଲାଲ ନେହେରୁ ବି ଆନ୍ଦୋଳନରେ ସାମିଲ୍ ହୋଇଗଲେ

ଗାନ୍ଧୀଜୀ ରାଓ୍ୱଲଟ୍ ଆକ୍ଟ ବିରୁଦ୍ଧରେ ସତ୍ୟାଗ୍ରହ କଲେ। ଜବାହରଙ୍କ ମନକୁ ଏହା ବେଶ୍ ପାଇଲା। ତାଙ୍କର ମନେ ହେଲା, ଏଥର ଲଢ଼େଇ ପାଇଁ ବାଟ ମିଳିଗଲା। ତାଙ୍କୁ କେବଳ କଥା ଆଉ ଭାଷଣର ରାଜନୀତି ଭଲ ଲାଗୁ ନଥିଲା। ଲଢ଼େଇ ଆଉ ଜେଲ ଯାତ୍ରା ବେଶ୍ ସୁହାଇଗଲା। ଏ ବାଟ କିନ୍ତୁ ବାପା ମୋତିଲାଲଙ୍କର ପସନ୍ଦ ନଥିଲା। ଏଥିପାଇଁ ଜବାହର ହଠାତ୍ ଲଢ଼େଇକୁ ଡ଼େଇଁ ପଡ଼ିଲେ ନାହିଁ। ଗାନ୍ଧୀଜୀ ତାଙ୍କୁ ଏହି ଭଳି ପରାମର୍ଶ ଦେଇଥିଲେ।

ତେବେ ଜବାହରଙ୍କୁ ଖୁବ୍ ବେଶୀ ଦିନ ଯାଏ ଅପେକ୍ଷା କରିବାକୁ ପଡ଼ିଲା ନାହିଁ। ଅଳ୍ପ କେତେ ଦିନ ଭିତରେ ମୋତିଲାଲ ମଧ୍ୟ ଗାନ୍ଧୀଜୀଙ୍କ ଆନ୍ଦୋଳନରେ ସାମିଲ ହୋଇଗଲେ। ଅମୃତସର ଜାଲିଆନାବାଲା ବାଗ୍‌ରେ ହେଉଥିବା ସଭାରେ ଜେନେରାଲ ଡ଼ାୟର୍ ଗୁଳି ବର୍ଷା କରିଦେଲେ। ଶହ ଶହ ଲୋକ ମଲେ। ନିରୀହ ଲୋକଙ୍କ ଉପରେ ଅତ୍ୟାଚାର କରାଗଲା। ଦେଶ ସାରା ହୁଲସ୍ଥୁଲ ପଡ଼ିଗଲା। ସେତେବେଳେ ଏ ସବୁର ଯାଞ୍ଚ ପାଇଁ ଗୋଟିଏ କମିଟୀ ତିଆରି ହେଲା। ସେଥିରେ ଗାନ୍ଧୀଜୀ ଆଉ ମୋତିଲାଲ ଦୁହେଁ ରହିଲେ। ଜବାହର ସେଇ କମିଟୀର ମନ୍ତ୍ରୀ ଥିଲେ। ସେଇ ଯେ ସହଯୋଗ ଆରମ୍ଭ ହେଲା, ତାହା ଗାନ୍ଧୀଜୀଙ୍କ ମରଣ ପର୍ଯ୍ୟନ୍ତ ବଜାୟ ରହିଲା।

ଗାନ୍ଧୀଜୀଙ୍କ ବିଚାରବୋଧ ଜବାହରଙ୍କ ମନକୁ ଖୁବ୍ ପାଇଲା। ସତ୍ୟ ଆଉ ଅହିଂସା ତାଙ୍କୁ ସଭ୍ୟ ଜୀବନର ଉପଯୁକ୍ତ ଆଧାର ବୋଲି ମନେ ହେଉଥିଲା। ବିନୟ ସହିତ ଅସହଯୋଗର ବାଟ ବି ତାଙ୍କୁ ଖୁବ୍ ଭଲ ଲାଗିଲା। ଗୋଟିଏ କଥା ସେ ବୁଝି ପାରୁ ନଥିଲେ। ଏହାକୁ ନେଇ ଯୁକ୍ତି କରାଯାଇ ପାରୁନଥିଲା।। ସେ ଜାଣିଥିଲେ ଯେ ସିଦ୍ଧାନ୍ତ ପାଇଁ ବିଚାର ଆଲୋଚନା ନିତାନ୍ତ ଦରକାର। ଭିତରୁ ଉଠୁଥିବା ସ୍ୱରକୁ ତ ପରୀକ୍ଷା କରାଯାଇ ପାରିବ ନାହିଁ। ଗୁଡ଼ ମିଠା, ଟିକିଏ ପାଟିରେ ପକାଇଲେ ଏହା ଜଣାଯିବ। ସିଦ୍ଧାନ୍ତ ଠିକ୍, ଏକଥା ଅନ୍ୟ ପାଖରେ ପହଞ୍ଚିଲେ ତ ଯାଇ ପରୀକ୍ଷା କରାଯାଇ ପାରିବ। ଜଣଙ୍କର ଅନ୍ତରର ଆବାଜ, ଅନ୍ୟ ଜଣଙ୍କର ଭିତରର ସ୍ୱର ହୋଇ ନପାରେ। ଗୁଡ଼କୁ ଯେମିତି ଯେ କେହି ଚାଖିପାରେ, ସେମିତି ସିଦ୍ଧାନ୍ତ ମଧ୍ୟ ଅନ୍ୟର ବୁଝାମଣା ଭିତରର ହୋଇଥିବା ଦରକାର। ସେତେବେଳେ ଯାଇ ତାହା ଭଲ କି ମନ୍ଦ ତା' ସେ ବାରିପାରିବ। ସେତେବେଳେ ତାକୁ ମାନିବ କି ମାନିବ ନାହିଁ ଠିକ୍ କରିପାରିବ।

କେବେ କେବେ ଦୁହିଁଙ୍କର ତୀବ୍ର ମତଭେଦ ବି ହେଉଥିଲା। ଥରେ ତ ୧୯୨୨ରେ ଅସହଯୋଗ ଆନ୍ଦୋଳନ ବନ୍ଦ କରିଦେବାରୁ ଉତ୍ତରପ୍ରଦେଶର

ଚୌରୀଚୌରା ନାମକ ଗୋଟିଏ ଗାଁର ଚାଷୀମାନେ ରାଗିଯାଇ ଥାନାରେ ନିଆଁ ଲଗାଇ ଦେଲେ। ଗାନ୍ଧୀଜୀ ହିଂସା ଦେଖି ଆନ୍ଦୋଳନ ବନ୍ଦ କରିଦେଲେ। ସତ୍ୟାଗ୍ରହୀମାନେ ଜେଲ ଭିତରେ ଏ ଖବର ପାଇଲେ, ସମସ୍ତେ ଖୁବ୍ ରାଗିଗଲେ। ନିଜେ ଜବାହର ମଧ୍ୟ କମ୍ ଅସନ୍ତୁଷ୍ଟ ହୋଇ ନଥିଲେ। ରାଗିଯାଇ ଗାନ୍ଧୀଜୀଙ୍କୁ ଖଣ୍ଡେ ଚିଠି ଲେଖିଲେ। ତେବେ ଗାନ୍ଧୀଜୀ ଧୈର୍ଯ୍ୟର ସହିତ ସମସ୍ତଙ୍କୁ ବୁଝାଇଲେ। ତେବେ ଯାଇ ସମସ୍ତଙ୍କର କ୍ରୋଧ ଶାନ୍ତି ହେଲା।

୧୯୨୭ରେ ଗାନ୍ଧୀଜୀ ମାନ୍ଦ୍ରାଜ କଂଗ୍ରେସକୁ ଯାଇ ନଥିଲେ। ସେଠାରେ ଜବାହର ଗୋଟିଏ ପ୍ରସ୍ତାବ ପାଶ୍ କରାଇ ନେଲେ, ଯାହା ଗାନ୍ଧୀଜୀଙ୍କ ମନକୁ ପାଇଲା ନାହିଁ। ପ୍ରସ୍ତାବଟି ହେଉଛି ଯେ ଭାରତର ସ୍ୱାଧୀନତା ହିଁ ହେଉଛି କଂଗ୍ରେସର ଲକ୍ଷ୍ୟ। ପରବର୍ଷ କଲିକତା କଂଗ୍ରେସରେ ଗାନ୍ଧୀଜୀ ଏଇଟିକୁ ବଦଳାଇ ଦେଲେ। ୧୯୨୯ରେ ଯେତେବେଳେ ଜବାହର କଂଗ୍ରେସର ସଭାପତି ହେଲେ, ସେତେବେଳେ 'ପୂର୍ଣ୍ଣ ସ୍ୱରାଜ'କୁ ହିଁ କଂଗ୍ରେସର ଲକ୍ଷ୍ୟ ବୋଲି ଗ୍ରହଣ କରି ନିଆଗଲା। ଏଥର ଗାନ୍ଧିଜୀ ବି କଥାଟିକୁ ମାନି ନେଲେ।

ଆଉ ଗୋଟିଏ ମତଭେଦ ଥିଲା। ୧୯୩୬-୩୭ ମସିହା ବେଳକୁ ତାହା ଜଣା ପଡ଼ିଗଲା। ଜବାହର ଚାହୁଁଥିଲେ ସ୍ୱାଧୀନ ଭାରତର ନୀତି ନିୟମର ପୂର୍ବ ନିର୍ଦ୍ଧାରଣ। ଗାନ୍ଧୀଜୀ କହୁଥିଲେ, ପ୍ରଥମେ ସ୍ୱାଧୀନତା ମିଳୁ। ଅନ୍ୟ କଥା ପରେ ଦେଖାଯିବ। ଜବାହର ଗାନ୍ଧୀଜୀଙ୍କୁ ଲେଖିଲେ, "ଯଦି ଲକ୍ଷ୍ୟ ସ୍ପଷ୍ଟ ନହେବ, ତେବେ ପାଦ ଆଗକୁ ବଢ଼ିବ କେମିତି ?" ଗାନ୍ଧୀଜୀ ଉତ୍ତର ଦେଲେ, "ଯେଉଁ ପାଦ ଉଠାଇଛ, ବର୍ତ୍ତମାନ କେବଳ ତାହାରି ଉପରେ ନଜର ରଖ। ଯଦି ତା ଠିକ ନପଡ଼େ, ତେବେ ଲକ୍ଷ୍ୟ ଦେଖିବାରେ କୌଣସି ଲାଭ ନାହିଁ।"

ଏ ମତଭେଦର ନିଷ୍ପତ୍ତି ମଧ୍ୟ ଜୀବନ କରିଦେଲା। ଜବାହର ଦେଖିଲେ ଆଗର ନିଷ୍ପତ୍ତି ଏବେ କରି ବସିଲେ କଂଗ୍ରେସ ଖଣ୍ଡ ଖଣ୍ଡ ହୋଇଯିବ। ସ୍ୱାଧୀନ ଭାରତର ଚିତ୍ର ଅଲଗା ଅଲଗା ଲୋକଙ୍କ ମନରେ ଅଲଗା ଅଲଗା ପ୍ରକାରର ଥିଲା। ଏ ମତଭେଦରୁ ଅନ୍ୟମାନେ ଲାଭ ଉଠାଇ ପାରନ୍ତି। ଏଥିପାଇଁ ଜବାହର ନିଜ ସମାଜବାଦୀ ଆଦର୍ଶର ପ୍ରଚାର ନିଜେ କରିବାକୁ ଲାଗିଲେ। ତାକୁ କଂଗ୍ରେସ ଉପରେ ଲଦି ଦେଲେ ନାହିଁ।

# 6
# ଚାଷୀ ଆମର ବଳ

ଗାନ୍ଧୀଜୀଙ୍କ ପ୍ରଭାବ ଜବାହରଙ୍କ ଉପରେ କିଭଳି ଯାଦୁ ବିଦ୍ୟା ଭଳି କାମ କରୁଥିଲା, ଏକଥା ଆମେ ପଢ଼ିଲେ। ଏହାର କାରଣ କ'ଣ? ଗାନ୍ଧୀଜୀ ଏ ଭଳି ଜଣେ ନେତା ଥିଲେ, ଯିଏକି ସ୍ୱାଧୀନତାର ଲଢ଼େଇକୁ ଜନତାର ଲଢ଼େଇର ରୂପ ଦେଇଦେଲେ। ବସି ବସି ବୈଠକଖାନାର ରାଜନୀତି ଜବାହରଙ୍କୁ ଭଲ ଲାଗୁ ନଥିଲା। ସେ କିଛି ଗୋଟିଏ କରିବାକୁ ଚାହୁଁଥିଲେ। କିଛି ଆଖିଦୃଶିଆ କାମ। ଗାନ୍ଧୀଜୀ ଏଥିପାଇଁ ବାଟ ଦେଖାଇଦେଲେ। ସେ ନିଜର ସାଥୀମାନଙ୍କୁ କହିଲେ କି ସେମାନେ ଗାଆଁକୁ ଯାଆନ୍ତୁ, ଚାଷୀ ମୂଲିଆଙ୍କ ଭିତରେ ରହି ସେମାନଙ୍କୁ ବୁଝିବାକୁ ଚେଷ୍ଟା କରନ୍ତୁ।

ସ୍ୱାଧୀନତାର ଲଢ଼େଇରେ ଗାନ୍ଧୀଜୀ ଖଣ୍ଡା ତଲ୍‌ବାର ଗୁଳି ବନ୍ଧୁକ ନେଇଁ ଲଢ଼ିବାକୁ ଚାହୁଁ ନଥିଲେ। ସେ ଜନତାର ବଳ ଉପରେ ଭରସା କରିବାକୁ ଚାହୁଁଥିଲେ। ଭାରତ ଭଳି ଦେଶରେ ସେ ବଳ କେବଳ ଗାଁରେ ହିଁ ମିଳିପାରିବ।

ଏକଥା ଜବାହରଙ୍କ ମନକୁ ପାଇଗଲା। କଲିକତାରେ ଛାତ୍ର ମାନଙ୍କୁ ସେ ଏଇ କଥା ବୁଝାଇ କହିଲେ, "ଯେ କୌଣସି ଆନ୍ଦୋଳନ ସେତେବେଳେ ସଫଳ ହୁଏ, ଯେତେବେଳେ ତାହା ଜନତାର ଆନ୍ଦୋଳନ ହୋଇଯାଏ। ଆପଣମାନେ ବୁଝିବା ଉଚିତ ଯେ, ଭାରତ ଚାଷୀମାନଙ୍କର ଦେଶ। ଏଠି ତେଣୁ ସେଇ ଆନ୍ଦୋଳନ ସଫଳ ହେବ, ଯାହା ସେଇ ଚାଷୀ ମୂଲିଆମାନଙ୍କୁ ନେଇ ଚାଲିବ।"

ସଂଯୋଗର କଥା। ଅସହଯୋଗ ଆନ୍ଦୋଳନ ଆଉ କୃଷକ ଶକ୍ତିର ଅନୁଭବ ଜବାହରଙ୍କର ଏକା ସଙ୍ଗରେ ହୋଇଗଲା। ଗାନ୍ଧୀଜୀଙ୍କର ସତ୍ୟାଗ୍ରହ ଆନ୍ଦୋଳନରେ ସେ ନିଜ ଇଚ୍ଛାରେ ଯୋଗ ଦେଲେ। ତେବେ କୃଷକ ଶକ୍ତି ସହିତ ତାଙ୍କର

ଭେଟ ହଠାତ୍ ହେଲା ।

୧୯୨୦ ମସିହାର କଥା । ପ୍ରତାପଗଡ଼ ଜିଲ୍ଲାର ପ୍ରାୟ ଦୁଇଶହ ଚାଷୀଙ୍କର ଗୋଟିଏ ଦଳ ଆହ୍ଲାବାଦ ଆସିଲା । ସେମାନେ ବଡ଼ ବଡ଼ ନେତାଙ୍କୁ ନିଜ ଅବସ୍ଥା ଜଣାଇବାକୁ ଚାହୁଁଥିଲେ । ସେମାନେ ଯମୁନା ଘାଟରେ ବସିଥିଲେ । ଜବାହର ଖବର ପାଇଲେ । ନିଜର କିଛି ସାଥୀଙ୍କୁ ସାଙ୍ଗରେ ଧରି ଜବାହର ସେମାନଙ୍କ ପାଖକୁ ଚାଲିଲେ ।

ସେମାନଙ୍କ ଉପରେ ଯେଉଁ ଜୁଲମ୍ ଚାଲିଛି ଚାଷୀମାନେ ତାହା ଜଣାଇଲେ । ଖଜଣା ଏତେ ବେଶୀ ଯେ, ସେମାନେ ଦେଇପାରୁ ନାହାନ୍ତି । କରଜ ଭାରରେ ଅଣ୍ଟା ନଇଁଗଲାଣି । ଜମିଦାର, ତାଲୁକଦାରମାନେ ବେଠିରେ ଧରାଇ ଆଣି ଖଟାଉଛନ୍ତି । ଭେଟି ଆଦାୟ କରୁଛନ୍ତି । ନଦେଲେ ଜମିରୁ ବେଦଖଲ କରି ଦେଉଛନ୍ତି ।

ଯେଉଁ ନେତାଙ୍କ ସହିତ ସେମାନେ ଦେଖା କରିବାକୁ ଆସିଥିଲେ, ସେମାନଙ୍କ ସହିତ ଦେଖା ହେଲା ନାହିଁ । ସେମାନେ ଜବାହରଙ୍କୁ କହିଲେ, "ଆପଣ ଆମ





ନେହେରୁ ଓ ଗାନ୍ଧୀଜୀ ଲୋକଙ୍କ ଭିତରେ

ସାଙ୍ଗରେ ଚାଲନ୍ତୁ।'' ଜବାହର ଏଥିପାଇଁ ପ୍ରସ୍ତୁତ ନ ଥିଲେ। ତେବେ ଚାଷୀମାନେ ମୋଟେ ମାନିଲେ ନାହିଁ। କହିଲେ, ''ହଜୁର, ଆପଣ ଆମ ସାଙ୍ଗରେ ନଗଲେ, ଆମେ ମରିଯିବୁ। ଆପଣ ନିଜ ଆଖିରେ ଦେଖିବେ, ଆମେ କି ଅବସ୍ଥାରେ ରହିଛୁ। ଆମକୁ ଜମିଦାରଙ୍କ ଦାଉରୁ ବଞ୍ଚାନ୍ତୁ। ଆମେ ଆଲାହାବାଦ ଆସିବାରୁ ସେତ ଆମ ଉପରେ ରାଗିକରି ରହିଛନ୍ତି।''

ସେମାନଙ୍କ କଥା ଶୁଣି ଜବାହରଙ୍କୁ ଲାଗିଲା, କିଛି ଗୋଟାଏ କରାଯିବା ଉଚିତ। ସେମାନଙ୍କୁ କହିଲେ ଦି ଦିନପରେ ସେ ଯାଇ ପହଞ୍ଚିବେ।

ଜବାହର ନିଜର କଥା ରଖିଲେ। ଠିକ୍ ଦି ଦିନପରେ ନିଜର ସାଥୀମାନଙ୍କୁ ନେଇ ସେଇ ସବୁ ଗାଁକୁ ଗଲେ। ତିନି ଦିନ ପର୍ଯ୍ୟନ୍ତ ଗାଁ ଗାଁ ବୁଲିଲେ। ଏତେ ଖରାତାତି ଆଉ ଗରମ ପବନ ଆଗରୁ ସେ କେବେ ସହି ନଥିଲେ। ଏଥର ନିଜ ଦେହ ଉପରେ ତାଙ୍କର ଭରସା ବଢ଼ିଗଲା।

ଯା'ଠୁ ବଳି ଆଉ ଗୋଟିଏ ବଡ଼ କଥା ବି ହୋଇଗଲା। ଚାଷୀମାନେ କି ଅବସ୍ଥାରେ ଅଛନ୍ତି, ଏହା ସେ ନିଜ ଆଖିରେ ଦେଖିଲେ। ଗରୀବହେଲେ ବି ସେମାନେ ଲଢ଼ିବାର ଶକ୍ତି ହରାଇ ନାହାନ୍ତି ବୋଲି ତାଙ୍କର ବିଶ୍ୱାସ ହେଲା। ଟିକିଏ ଆଶରା ପାଇଲେ, ସେମାନେ ଉଠି ଠିଆ ହେବେ। ଜବାହରଙ୍କୁ ଲାଗିଲା, ଏଇ ବିରାଟ ଶକ୍ତିକୁ ସଜଡ଼ା ଯାଇ ପାରିଲେ, ଆଜାଦୀର ଲଢ଼େଇରେ ବହୁତ କାମ ଦେଖାଇବ।

ଏଇଭଳି ଚାଷୀ ଆନ୍ଦୋଳନ ସହିତ ମିଶି ଯିବାରୁ ଜବାହରଙ୍କ ଜୀବନର ଗତି ବଦଳିଗଲା। ସେ ଲେଖିଛନ୍ତି ଯେ, ଯଦି ଏ ଘଟଣା ଘଟିନଥାନ୍ତା, ତେବେ ତାଙ୍କ ଜୀବନ କୁଆଡ଼େ ଗତି କରିଥାଆନ୍ତା କିଏ ଜାଣେ ?

କଥା ଅନୁସାରେ ଜବାହର ସେ ସବୁ ଗାଁକୁ ଗଲେ। ତିନି ଦିନ ପର୍ଯ୍ୟନ୍ତ ଘୁରି ବୁଲିଲେ। ଚାଷୀ ମୂଲିଆଙ୍କ ଦୁଃଖ ଦୁର୍ଦ୍ଦଶାର କାହାଣୀ ଶୁଣିଲେ। ଜମିଦାର ଆଉ ପୋଲିସର ଜୁଲମ୍ କଥା ବି ଶୁଣିଲେ। ବଢୁଥିବା କରଜର ଭାର, ଆଉ ଜମିବାଡ଼ି ବେଦଖଲ ହେବାର କଥା ତାଙ୍କ କାନରେ ପଡ଼ିଲା। ଚାଷୀମାନେ ଦିନ ରାତି ମାଟି ସଙ୍ଗରେ ଲାଗିଥାଆନ୍ତି, ଝାଳ ବୁହାଇ ଫସଲ ଉପୁଜାନ୍ତି। ତା'ପରେ ତାଙ୍କୁ କହି ଦିଆଯାଏ କି, ଏ ଫସଲ ତାଙ୍କର ନୁହେଁ। କ୍ଷେତରୁ ତାଙ୍କୁ ବାହାର କରି ଦିଆଯାଏ। ଘରୁ ବି ବାହାର କରିଦିଆଯାଏ। କାହିଁକି ? କଣ ଏଇଥି ପାଇଁ ଯେ, ଜମିଦାର ଯେତେ ଚାହାନ୍ତି, ସେତେ ଖଜଣା ସେମାନେ ଦେଇପାରନ୍ତି ନାହିଁ ବୋଲି ?

ଭାରତର ଦରିଦ୍ରତା ଆଉ ଅସହାୟତାର ଏ ରୂପ ପ୍ରଥମ ଥର ପାଇଁ ଜବାହରଙ୍କ ଆଖିରେ ପଡ଼ିଲା। ନିଜ 'ଆତ୍ମକଥା'ରେ ସେ ଲେଖିଛନ୍ତି, "ଭାରତର ଗୋଟିଏ ନୂଆ ଚିତ୍ର ମୋ ଆଖି ଆଗରେ ଭାସି ଉଠିଲା। ଲଙ୍ଗଳା, ଭୋକିଲା, ଦଳିତ ଆଉ ଦୁଃଖୀ ଭାରତର ଚିତ୍ର।" ଏହାକୁ ଦେଖି ତାଙ୍କ ମନରେ ବହୁତ ଦୁଃଖ ହେଲା। ନିଜ ଆଖ ପାଖରେ ଏତେ ଦୁଃଖ ଦୁର୍ଦ୍ଦଶା ପୂରି ରହିଥିଲାବେଳେ ଆମେ କେମିତି ଭୋଗ ବିଳାସର ଜୀବନ କଟାଉଛୁ, ଏକଥା ଭାବି ତାଙ୍କର ନିଜ ଉପରେ ଲଜ୍ୟା ଆସିଲା।

ଜବାହରଲାଲ ଆଉ ତାଙ୍କର ବନ୍ଧୁମାନେ ଯେତେବେଳେ ଗାଁ ଗହଳିକୁ ଯାଆନ୍ତି, ସେତେବେଳେ ଗାଁର ଲୋକେ ତାଙ୍କ ପାଖରେ ରୁଣ୍ଡ ହୋଇ ଯାଆନ୍ତି। ସଭା ଆରମ୍ଭ ହୋଇଯାଏ। ତୁଣ୍ଡରୁ ତୁଣ୍ଡକୁ ହୋଇ କଥା ପାଖ ଆଖ ଗାଁ ମାନଙ୍କରେ ପହଞ୍ଚିଯାଏ। ଜବାହରଲାଲଙ୍କ ଦଳ ପହଞ୍ଚିବା ଆଗରୁ ଲୋକେ ଦଳ ଦଳ ହୋଇ ଆସି ପଡ଼ିଆ, ବିଲବାଡ଼ି କିମ୍ବା ଚଉପାଢ଼ି ଉପରେ ବସି ଯାଆନ୍ତି। କିଛି ପ୍ରଚାର ନଥାଇ ଏମିତି କେତୋଟି ବଡ଼ ବଡ଼ ସଭା ହେଲା। ସାରା ଗାଁର ଲୋକେ ସଭାରେ ଯୋଗ ଦେଲେ। ପିଲା ବୁଢ଼ା ନାରୀ ପୁରୁଷ ସମସ୍ତେ ସଭାକୁ ଆସନ୍ତି। ସେମାନଙ୍କ ଦେହରେ ଫଟା ପୁରୁଣା ଲୁଗା। ଅଧା ଲଙ୍ଗଳା କହିଲେ ଚଳେ। ତେବେ ସେମାନଙ୍କ ଆଖିରେ ନୂଆ ଚମକ। ସେମାନଙ୍କ ମନରେ ବିଶ୍ୱାସ ହେଉଥିଲା ଯେ, ଏଇ ନେତାମାନେ ସେମାନଙ୍କ ଦୁଃଖ କଷ୍ଟ ଦୂର କରିବା ପାଇଁ କିଛି ନା କିଛି ଉପାୟ ବାହାର କରିବେ। ସେମାନଙ୍କ ଭରସା ଜବାହରଲାଲଙ୍କୁ ଚହଲାଇ ଦେଲା। ଏମାନଙ୍କ ପାଇଁ କିଛି ଗୋଟାଏ କରିବା ପାଇଁ ତାଙ୍କର ଖୁବ୍ ଇଚ୍ଛା ହେଲା। 'ଏ ନୂଆ ସମ୍ପର୍କକୁ ମୁଁ ବଞ୍ଚାଇ ରଖି ପାରିବି ତ?' ଏଇ କଥା ଭାବି ତାଙ୍କ ମନରେ କିଛି ଭୟ ମଧ ଦେଖାଦେଲା।

ସେଠାରୁ ସେ ମସୁରୀ ଲେଉଟିଗଲେ। ଖରା ଗରମ ପାଇଁ ତାଙ୍କର ପରିବାର ସେତେବେଳେ ସେଇଠି ଥିଲେ। ତେବେ ଚାଷୀମାନଙ୍କ ଜୀବନର ଛବି ତାଙ୍କ ମନରେ ସବୁବେଳେ ନାଚୁଥିଲା। ସେଠାରୁ ଫେରି ସେ ପୁଣି ସେଇ ସବୁ ଗାଆଁକୁ ଗଲେ। କୃଷକ ଆନ୍ଦୋଳନ ଧୀରେ ଧୀରେ ଜୋର୍‌ଦାର ହେବାକୁ ଲାଗିଲା। ସେମାନଙ୍କ ଭିତରେ ନୂଆ ଭାବ ଖେଳିଗଲା। ନିଜ ଉପରେ ସେମାନଙ୍କର ଭରସା ଆସିଗଲା। ସେମାନେ ବୁଝିଗଲେ ଯେ, ସେମାନଙ୍କର ବି ମାନ ଇଜ୍ଜତ ଅଛି।

କିଛିଦିନ ପରେ ଗୋଟିଏ ଘଟଣା ଘଟିଗଲା। ଏଥିରେ ଚାଷୀମାନଙ୍କର

ଆଉ ଗୋଟିଏ ରୂପ ଫିଟି ବାହାରିଲା । ସେମାନେ ଦୀନ ଦୁଃଖୀ ଥିଲେ ସତ, ତେବେ ସତ୍ୟ ଆଉ ଅହିଂସାର ପୂଜାରୀ ମଧ୍ୟ ଥିଲେ ।

ଜାନୁଆରୀ ୧୯୨୧ ମସିହାର କଥା । ରାୟବରେଲୀର ଚାଷୀମାନେ ଜବାହରଙ୍କୁ ଗୋଟିଏ ତାର ପଠାଇଲେ । ପୁଲିସ୍ କିଛି ଚାଷୀନେତାଙ୍କୁ ଧରିନେଇଥିଲା । ସେମାନେ ରାୟବରେଲୀ ଜେଲ୍‌ରେ ଥିଲେ । ଆଖପାଖର ଚାଷୀମାନେ ଏହାର ବିରୋଧ କରି ଶୋଭାଯାତ୍ରାମାନ ବାହାର କରୁଥିଲେ । ଏମାନଙ୍କୁ ପୁଲିସ୍ ନଦୀ ଆରପାଖରେ ରୋକି ନେଇଥିଲା । ଜବାହର ସିଧା ସେଇଠି ପହଞ୍ଚିଗଲେ ।

ସେତେବେଳକୁ ସେଠି ଗୁଳି ଚାଲିଲାଣି । ଜବାହରଙ୍କୁ ଦେଖି ଆଖପାଖ ବିଲ ଭିତରେ ଲୁଚିଥିବା ଲୋକେ ବାହାରି ଆସିଲେ । ସେମାନେ ତାଙ୍କୁ ଘେରି ଗଲେ । ସଭା ଜମିଗଲା । ଜବାହର ଭାଷଣ ଦେଲେ । ସେମାନଙ୍କୁ ଶାନ୍ତି ରଖିବାକୁ କହିଲେ । ନଈ ଆର ପାରିରେ ସେମାନଙ୍କ ଭାଇ ବନ୍ଧୁଙ୍କ ଉପରେ ଗୁଳି ଚାଲିଥିଲା । ରକ୍ତ ଝରୁଥିଲା । ତଥାପି ସେମାନଙ୍କ ଭିତରୁ କେହି ଗୁଳି ଚଳାଉଥିବା ଲୋକଙ୍କ ଉପରେ ହାତ ଉଠାଇଲେ ନାହିଁ ।

ଏହାଠାରୁ ବଡ଼ ଅହିଂସା ଆଉ କ'ଣ ହୋଇପାରେ ?

ଏମିତି ଗୋଟିଏ ଘଟଣା ଫୈଜାବାଦ୍ ଜିଲ୍ଲାରେ ବି ଘଟିଲା । ସେଠି ଚାଷୀମାନେ ମିଶି ଜଣେ ତାଲୁକଦାରଙ୍କ ଘର ଲୁଟି ନେଲେ । ପରେ ଜଣାଗଲା ଯେ, ଆଉ ଜଣେ ଜମିଦାର ସେମାନଙ୍କୁ ଏଇ କାମ କରିବା ଲାଗି ଉସକେଇ ଦେଇଥିଲେ । ଚାଷୀମାନଙ୍କୁ କହି ଦିଆଯାଇଥିଲା କି ଗାନ୍ଧୀଜୀ ଏଇଆ ଚାହୁଁଛନ୍ତି । ଲୁଟତରାଜ ଚାଲିଥିଲାବେଳେ ସେମାନେ 'ମହାତ୍ମା ଗାନ୍ଧୀ କି ଜୟ' ଆବାଜ ବି ଦେଉଥିଲେ ।

ଜବାହର ସେଠାରେ ପହଞ୍ଚିଲେ । ସଭା ଡ଼କରା ହେଲା । ଅଳ୍ପ ସମୟ ଭିତରେ ପାଞ୍ଚ ଛ ହଜାର ଲୋକ ଜମା ହୋଇଗଲେ । ଜବାହର ସେମାନଙ୍କୁ ଗାଳି ଦେଲେ । କହିଲେ, ତମେମାନେ ଆମ ମୁହଁରେ କଳା ବୋଳି ଦେଇଛ । ଯେଉଁମାନେ ଲୁଟତରାଜରେ ଭାଗ ନେଇଛ, ସେମାନେ ହାତ ଟେକ । ଜବାହର ନିଜେ ଲେଖିଛନ୍ତି, ସାଙ୍ଗେ ସାଙ୍ଗେ ପ୍ରାୟ କୋଡ଼ିଏ ପଚିଶ ଜଣ ହାତ ଟେକିଲେ । ପୁଲିସ୍ ଠିଆ ହୋଇ ଦେଖୁଥିଲା । ହାତ ଟେକିଥିବା ଲୋକଙ୍କୁ ଧରାଯାଇ ପାରିଥାଆନ୍ତା । ତଥାପି ସେମାନେ ମିଛ କଥା କହିଲେ ନାହିଁ ।

ଭାରତର ଚାଷୀମାନଙ୍କର ଏଇ ରୂପ ସଦାବେଳେ ଜବାହରଙ୍କ ମନ ଭିତରେ ରହିଥିଲା । ଚାଷୀମାନଙ୍କୁ ସେ ନିଜର ବଳ ବୋଲି ଭାବୁଥିଲେ । ଏଣେ ସେମାନଙ୍କ ପାଇଁ ତାଙ୍କର ଯେଉଁ ଦାୟିତ୍ୱ, ସେ କଥା ମଧ୍ୟ ମନେ ରଖିଥିଲେ ।

# 7
# ଜେଲଯାତ୍ରା

ଯେଉଁମାନେ ଜେଲ ଯାଆନ୍ତି, ସେମାନେ ଅପରାଧୀ। ନୀତିନିୟମ ଭାଙ୍ଗୁଥିବା ଲୋକଙ୍କୁ ଜେଲ୍ ପଠାଯାଏ। କାରଣ ଏମାନେ ସମାଜ ପାଇଁ ବିପଦ ଡ଼ାକିଆଣନ୍ତି। ସମାଜକୁ ଠିକ୍ ବାଟରେ ଚଲାଇବା ପାଇଁ ଏମାନଙ୍କୁ ଜେଲରେ ଅଟକ କରାଯାଏ।

ତେବେ ସବୁବେଳେ ଏମିତି ହୁଏ ନାହିଁ। ବେଳେବେଳେ ସମାଜବିରୋଧୀ ଲୋକେ ବି ସମାଜ ରକ୍ଷାର ଠିକାଦାର ହୋଇ ବସନ୍ତି। ସେତେବେଳେ ଠିକ୍ ନିୟମ ଜାଗାରେ ଭୁଲ୍ ନିୟମମାନ ଲାଗୁ ହୋଇଯାଏ। ତାକୁ ଆମେ 'ଚାପ ପକାଇବା' କହୁଁ। ସେତେବେଳେ ଏଇ ଧରଣର ଲୋକଙ୍କୁ ଜେଲ୍ ଦେବା ଦରକାର ହୋଇପଡ଼େ।

ଇଂରେଜ ଶାସନରେ ଭାରତର ଏଇଭଳି ଅବସ୍ଥା ଥିଲା। ଶାସନ ନିୟମର ବିରୋଧୀ ଥିଲା କହିଲେ ଚଳେ। ଅନ୍ୟର ହକ ଛଡ଼ାଇ ନେବା ପାଇଁ କୌଣସି ମଣିଷ ବା ଜାତିର ଅଧିକାର ନାହିଁ। ପ୍ରାୟ ଏଗାର ହଜାର କିଲୋମିଟର ଦୂରରୁ ଆସି ଭାରତ ଶାସନ କରୁଥିବା ଇଂରେଜମାନେ ଭାରତର ଅଧିକାର ଛଡ଼ାଇ ନେଇଥିଲେ। ଭାରତବାସୀ ନିଜର ହକ ଲେଇଟାଇ ନେବାକୁ ଚାହୁଁଥିଲେ। ଇଂରେଜମାନେ ସେମାନଙ୍କୁ ଦବାଇ ରଖିଥିଲେ। ସମାଜର ନିୟମକୁ ଭାଙ୍ଗିଥିଲେ। ଭାରତ ଶାସନକୁ ସେମାନେ ନିଜର ଅଧିକାର ବୋଲି ଭାବୁଥିଲେ।

ଏଇଥିପାଇଁ ନିଜର ହକ ମାଗୁଥିବା ଲୋକ ଥିଲେ ଇଂରେଜ ଶାସନର ଶତ୍ରୁ। ନିଜ ଅଧିକାର ଜମାଇ ରଖିବା ପାଇଁ ଇଂରେଜମାନେ ସେମାନଙ୍କୁ ଜେଲ୍‌ରେ ବନ୍ଦୀ କରୁଥିଲେ। ଏହି କାରଣରୁ ଭାରତର ଅନେକ ଦେଶପ୍ରେମୀଙ୍କୁ ଜେଲ୍ ଯିବାକୁ ହୋଇଥିଲା। ସ୍ୱାଧୀନତା ପାଇଁ ଯେଉଁମାନେ ଜେଲ୍ ଭୋଗିଲେ, ସେମାନଙ୍କୁ

ଠିକ୍ ଅପରାଧୀ କୁହାଯାଇ ପାରିବ ନାହିଁ। ଲୋକେ ସେମାନଙ୍କୁ ଶ୍ରଦ୍ଧା ଭକ୍ତି କରୁଥିଲେ।

ଜେଲ୍ ଯିବା ତାଲିକାରେ ଜବାହରଙ୍କ ନାମ ଆଗରେ ଥିଲା। ୧୯୨୧ ରୁ ୧୯୪୬ ମସିହା ଭିତରେ ପଚିଶ ବର୍ଷରେ ସେ ପ୍ରାୟ ଦଶ ବର୍ଷ କାଳ ଜେଲରେ କଟାଇଲେ। ନଅଥର ତାଙ୍କୁ ଜେଲ୍ ଯିବାକୁ ହୋଇଥିଲା। ତାଙ୍କ ଜୀବନର ୩୨୬୨ ଦିନ ନଅଟି ଅଲଗା ଅଲଗା ଜେଲରେ କଟିଥିଲା। ସେଗୁଡ଼ିକ ହେଲା ଲକ୍ଷ୍ନୌ, ନାଭା, ନୈନି, ଆଲାହାବାଦ, ବରେଲୀ, ଡ଼େରାଡୁନ୍, କଲିକତା, ଅଲମୋଡ଼ା, ଗୋରଖପୁର ଏବଂ ଅହମଦନଗର।

ଜେଲ୍ ଜୀବନ ବହୁତ କଷ୍ଟକର। ବାହାର ଦୁନିଆଁରୁ ସମ୍ପର୍କ କଟିଯାଏ। ମଣିଷ ବନ୍ଧୁ ସୋଦରଙ୍କ ଠାରୁ ଅଲଗା ହୋଇଯାଏ। ତାଙ୍କ ଦୁଃଖ ସୁଖରେ ଭାଗ ନେଇ ପାରେ ନାହିଁ। ଜବାହର ନିଜର ବେମାର ବାପା ମାଆ ଆଉ ସ୍ତ୍ରୀଙ୍କର ସେବା କରି ପାରିଲେ ନାହିଁ। ନିଜର ଏତେ ସ୍ନେହର ଝିଅ- ତା'ର ଜନ୍ମ ଦିନରେ ଉପହାରଟିଏ ବି ପଠାଇ ପାରିଲେ ନାହିଁ। ଏ ସବୁ କଥାରେ ତାଙ୍କ ମନକୁ କେତେ କଷ୍ଟ ହୋଇ ନ ଥିବ! ଏ ଦୁଃଖ କିଏ ବୁଝିବ?



ଅଲମୋଡ଼ା ଜେଲର କୋଠରୀ

ଜେଲ ଜୀବନ ବିଷୟରେ ଜବାହର ଲେଖିଛନ୍ତି, ''ଜୀବନ ନୀରସ ହୋଇଯାଏ। ପୂରା ରଙ୍ଗହୀନ ଆଉ ସ୍ୱାଦହୀନ। ଯେମିତି ଏକ ମରୁଭୂମି ଚାରିଆଡ଼ ଖାଲି ଧୂଧୂ ବାଲି। ଗଛଟିଏ ବି ନାହିଁ, ଯାହା ଛାଇରେ ଦଣ୍ଡେ ବସି ମଣିଷ ଥକା ମେଣ୍ଟାଇବ।''

ତେବେ ଜେଲ୍ ଯିବା ବିଷୟରେ ସେ କେବେ କାହାରି ପାଖରେ ତୁଣ୍ଡ ଖୋଲି ନାହାନ୍ତି। ଏତିକି ଜାଣିଥିଲେ ଯେ, ଗୋଟିଏ ବଡ଼କାମ ପାଇଁ ସେ ତ୍ୟାଗ କରୁଛନ୍ତି। ଦେଶକୁ ଭଲ ପାଇବାର ମୂଲ୍ୟ ଦେଉଛନ୍ତି। ଜେଲ୍‌ରେ କଟାଇଥିବା ଦିନଗୁଡ଼ିକ ବିଷୟରେ ସେ ନିଜକୁ ନିଜେ ପଚାରନ୍ତି, ''ଏହା କଣ ଦରକାର ଥିଲା?'' ଶୀଘ୍ର ସେ ନିଜ ଭିତରୁ ଏ ପ୍ରଶ୍ନର ଉତ୍ତର ବି ପାଇଯାଆନ୍ତି। ନିଜ ଆତ୍ମକଥାରେ ସେ ଏ ବିଷୟରେ ଲେଖିଛନ୍ତି, ''ଯଦି ପୁଣି କେବେ ଜେଲ୍ ଯିବା ପାଇଁ ଦରକାର ହୁଏ, ତେବେ ମୁଁ କଦାପି ପଛେଇବି ନାହିଁ।''

ଏ ଜୀବନ ପାଇଁ ସେ କେବେ ଅସୁଖୀ ବା ବିରକ୍ତ ନଥିଲେ। ବରଂ ନିଜ ଆଦର୍ଶ ପଥରେ ଆଗେଇ ଚାଲିବା ପାଇଁ ସେ ଏଇ ସମୟତକ ବ୍ୟବହାର କରୁଥିଲେ। ବାହାରେ ଥିଲାବେଳେ ଯାହା କରିପାରି ନଥିଲେ, ତାହା ସେ ଜେଲ୍‌ରେ କଲେ। ବାହାରେ ତାଙ୍କୁ ପ୍ରାୟ ସମୟ ମିଳୁନଥିଲା। ଦେଖା କରିବାକୁ ଲୋକଙ୍କର ଧାଡ଼ି ଲାଗିଥାଏ। ଏଠିକି ସେଠିକି ଯିବାକୁ ପଡୁଥାଏ। ସଭାରେ ଯୋଗ ଦେବାକୁ ହେଉଥାଏ। ଭାବିବାକୁ କି ଲେଖାପଢ଼ା କରିବାକୁ ସମୟ ମିଳେ ନାହିଁ। ଜବାହର ଗଛ ଲତାକୁ ଭାରି ଭଲ ପାଉଥିଲେ। ଜନ୍ତୁଜନ୍ତା ପୋଷିବା ପାଇଁ ତାଙ୍କର ବହୁତ ଆଗ୍ରହ ଥିଲା। ତେବେ ସମୟ ଅଭାବରୁ ସେମାନଙ୍କର ଦେଖାଶୁଣା କରିପାରୁ ନଥିଲେ।

ଜେଲ୍‌ରେ ଏସବୁ କରିବାକୁ ତାଙ୍କୁ ବହୁତ ସମୟ ମିଳିଲା। ଅହମଦ ନଗର କିଲାରେ ନିଜ କୋଠରୀର ବାହାରେ ସେ ଫୁଲଗଛ ଲଗାଇଲେ। ଗୋଟିଏ ଜେଲ୍‌ରେ ବେମାର କୁକୁରଟିଏର ଖୁବ୍ ସେବା କଲେ।

ସବୁଠୁ ବଡ଼ କଥା, ଜେଲରେ ତାଙ୍କୁ ଲେଖାଲେଖି କରିବାପାଇଁ ବେଶ୍ ସମୟ ମିଳିଲା। ତାଙ୍କର ତିନୋଟି ବଡ଼ ବହି ଜେଲ୍‌ରେ ହିଁ ଲେଖାଯାଇଛି। ସେଗୁଡ଼ିକ ହେଉଛି ''ମୋ କାହାଣୀ'', ''ଭାରତ ଆବିଷ୍କାର'' ଆଉ ''ବିଶ୍ୱ ଇତିହାସ''। ଏ ସବୁଥିରେ ଭାରତର ସ୍ୱାଧୀନତା ସଂଗ୍ରାମ, ଭାରତର ଅତୀତ ଓ ମଣିଷ ସମାଜର ବିକାଶର ଚମତ୍କାର ବର୍ଣ୍ଣନା ରହିଛି। ଏଥିପାଇଁ କେବଳ ଭାରତ ନୁହେଁ, ସାରା ଦୁନିଆଁ ତାଙ୍କୁ କାଳକାଳ ଧରି ମନେ ପକାଉଥିବ।

ଜେଲ୍ ଯିବା ଆଗରୁ ସବୁଥର ମକଦ୍ଦମା ଚାଲୁଥିଲା। ଜବାହର ତହିଁରେ ଭାଗ ନେଉ ନଥିଲେ। ନିଜ ଆଡୁ କିଛି ସଫାଇ ଦେଉ ନଥିଲେ। ସେ ଜାଣିଥିଲେ ଯେ, ତାଙ୍କୁ ଜେଲ୍ ଦେବାପାଇଁ ଆଗରୁ ଠିକଣା କରାଯାଇ ସାରିଛି। ବିଚାର ଖାଲି ଗୋଟାଏ ବାହାନା। ସଫାଇ ବଦଳରେ ସେ ଗୋଟିଏ ବୟାନ ଦେଉଥିଲେ। ତହିଁରେ ଶାସନର ଦୋଷ ତ୍ରୁଟି ଦେଖାଇ ଦେଉଥିଲେ।

ଜବାହରଙ୍କ ନାମରେ ପ୍ରଥମ ମକଦ୍ଦମା ୧୯୨୧ରେ ଆରମ୍ଭ ହେଲା। କଂଗ୍ରେସ ନିଜର ସେବାଦଳ ତିଆରି କରୁଥିଲା। ଶାସନ ଆଖିରେ ତାହା ଥିଲା ଆଇନ୍‌ର ଖିଲାପ୍ କରିବା। ଏଇ ମକଦ୍ଦମାରେ ସେ ଇଂରେଜ ଅଦାଲତ ବିଷୟରେ ନିଜର ରାୟ ଦେଇଥିଲେ।

ଅଦାଲତର ଗୋଟିଏ ପ୍ରଶ୍ନର ଉତ୍ତରରେ ସେ କହିଥିଲେ, "ମୁଁ ଭାରତରେ ଇଂରେଜ ଶାସନକୁ ମାନେନାହିଁ। ଏ ଅଦାଲତକୁ ଅଦାଲତ ବୋଲି ମାନିବାକୁ ବି ମୁଁ ରାଜି ନୁହେଁ। ଏଠି ଯାହା କିଛି ହେଉଛି, ସେସବୁ ଖାଲି ଗୋଟାଏ ଲୋକ ଦେଖାଣିଆ ତାମ୍‌ସା। ଏ ଅଦାଲତ ସେଇଆ କରିବ, ଯାହା କରିବାକୁ ତାକୁ କହି ଦିଆଯାଇଛି।"

ମାର୍ଚ୍ଚ ୩ ତାରିଖ ୧୯୨୨ ମସିହାରେ ସେ ପ୍ରଥମ ଥର ପାଇଁ ଜେଲ୍‌ରୁ ବାହାରକୁ ଆସିଲେ। ବାହାରକୁ ଆସି ସେ ବିଦେଶୀ ଲୁଗାପଟା ବିରୋଧରେ ପ୍ରଚାରରେ ଲାଗିଗଲେ। ଲୁଗା ଦୋକାନୀଙ୍କୁ ବିଦେଶୀ ଲୁଗା ନ ଆଣିବାକୁ କହୁଥିଲେ। ଇଂରେଜ ସରକାର ଏହାକୁ ଅପରାଧ ବୋଲି କହିଥିଲେ। ମେ ମାସରେ ମକଦ୍ଦମା ଆରମ୍ଭ ହେଲା। ଏଥିରେ ସେ ଗୋଟିଏ ଲମ୍ବା ବୟାନ ଦେଲେ। ସେଥିରୁ କେତୋଟି ଶବ୍ଦ ଏବେ ମଧ୍ୟ ଭୁଲି ହେଉ ନାହିଁ। ଜବାହର କହିଲେ-

"ମୁଁ ନିଜକୁ ଖୁବ୍ ଭାଗ୍ୟବାନ୍ ମନେ କରେ। ସ୍ୱାଧୀନତା ଲଢ଼େଇରେ ଭାରତର ସେବା କରିବା ହେଉଛି ବଡ଼ କଥା। ଏଥିରେ ମହାତ୍ମାଗାନ୍ଧୀଙ୍କର ହାତମୁଠା ଟାଣ ହେବ। ଏହା କିଛି କମ୍ ସୌଭାଗ୍ୟ ନୁହେଁ। ନିଜର ଦେଶପାଇଁ ଦୁଃଖ କଷ୍ଟ ସହିବାଠାରୁ ବଡ଼ କଥା ଜଣେ ଭାରତୀୟ ପାଇଁ ଆଉ କଣ ହୋଇପାରେ ? ଦେଶପାଇଁ ଜୀବନ ଦେବା ହେଉଛି ଏହାଠାରୁ ଅଧିକ।"

ତୃତୀୟଥର ନାଭା ଜେଲ୍‌ରେ କେବଳ ବାରଦିନ ପାଇଁ ରହିବାକୁ ହୋଇଥିଲା। ସେ ଦେଖିଲେ ଜଜ୍ ପାଠଶାଠ କିଛି ପଢ଼ି ନଥିଲେ। ଚତୁର୍ଥ ଥର ଲୁଣ-ଆଇନ ଭାଙ୍ଗିବା ଅପରାଧରେ ସେ ଜେଲଗଲେ।

ଏଥିରୁ ମୁକୁଳିବାର ମାତ୍ର ଆଠଦିନରେ ତାଙ୍କୁ ପୁଣି ଜେଲ୍‌କୁ ପଠାଇ ଦିଆଗଲା। ଅଭିଯୋଗ କରାଗଲା କି ସେ ସରକାରଙ୍କ ବିରୋଧରେ ଲୋକଙ୍କୁ ମତାଉଛନ୍ତି।

ସେତେବେଳେ ସେ କଂଗ୍ରେସର ସଭାପତି। ସେଇଥର ଲାହୋର କଂଗ୍ରେସରେ ପୂର୍ଣ୍ଣ ସ୍ୱାଧୀନତା ପ୍ରସ୍ତାବ ପାସ୍ ହୋଇଥାଏ। ଇଂରେଜମାନଙ୍କ ଆଗରେ ସେ କୌଣସି ସଫାଇ ଦେଲେ ନାହିଁ।

ଅଦାଲତକୁ ସେ କହିଲେ, "ମୁଁ ଭାରତର ଜନତାଙ୍କର ସେବକ। ଅନ୍ୟ କାହାରିକୁ ମୁଁ ମୋର ମାଲିକ ବୋଲି ମାନେ ନାହିଁ।"

ସେ ଆହୁରି ବି କହିଲେ, "ଆମର ଇଂରେଜ ଜନତାଙ୍କ ସହିତ କୌଣସି ବିରୋଧ ନାହିଁ। ଆମେ ଲାଞ୍ଚା ରାଜୁଡ଼ା ଶାସନର ବିରୋଧ କରୁଛୁ। ଆମ ଭଳି ଇଂରେଜ ଜନତା ଆଉ ଖଟିଖିଆ ମଧ୍ୟ ଏହାର ଶିକାର ହେଉଛନ୍ତି। ଏହି ସାମ୍ରାଜ୍ୟ ଆଉ ବ୍ରିଟେନ୍ ପ୍ରତି ଆମେ ଅନୁଗତ ନୋହୁଁ। ଇଂରେଜ ପତାକା ଆମର ଅପମାନ। ମୁଁ କେବଳ ଭାରତର ଜନତାଙ୍କର ଅନୁଗତ, କୌଣସି ବାଦ୍‌ଶାହ କି ବିଦେଶୀ ସରକାରଙ୍କୁ ମାନେ ନାହିଁ।"

ଜବାହର ସରକାରୀ ଆଦେଶ ମାନିଲେ ନାହିଁ। ଷଷ୍ଠ ଥର ପାଇଁ ଜେଲ୍ ଗଲେ। ଆଲାହାବାଦ ଛାଡ଼ି ବାହାରକୁ ଯାଇ ପାରିବେ ନାହିଁ ବୋଲି ତାଙ୍କ ଉପରେ ଆଦେଶ ଜାରି ହେଲା। ଅଦାଲତକୁ ଯାଇ ସେ କହିଲେ, "ମୁଁ କଂଗ୍ରେସର ସଭାପତି। ବହୁତ କମିଟୀରେ ବି ରହିଛି। ଏ ସବୁ କାମରେ କିଛି ବାଧା ମୁଁ ବରଦାସ୍ତ କରିବି ନାହିଁ।"

ସେ ଏ କଥା ବି କହିଲେ, "ନିଜ କାମ ଦାମ ବିଷୟରେ ମୁଁ କେବଳ କଂଗ୍ରେସର ଆଦେଶ ମାନିଥାଏ। ଅଦାଲତ ଚାହିଁଲେ ମୁଁ ସରକାରୀ ଆଦେଶକୁ କଂଗ୍ରେସ ଆଗରେ ପେଶ୍ କରିପାରେ। କଂଗ୍ରେସ ଯାହା କହିବ, ମୁଁ ସେଇଆ କରିବି।"

ଅଦାଲତ ତାଙ୍କୁ ଦୁଇ ବର୍ଷର କଠିନ ଦଣ୍ଡ ଆଉ ପାଞ୍ଚଶହ ଟଙ୍କା ଜୋରିମାନା କଲା। ଜୋରିମାନା ଆଦାୟ କରିବା ପାଇଁ ତାଙ୍କ ଗାଡ଼ିକୁ ନିଲାମ୍ କରି ଦିଆଗଲା।

ଏମିତି ଡ଼ରଭୟ ଛାଡ଼ି ସେ ଖୋଲାଖୋଲି ସବୁକଥା କହୁଥିଲେ। ଦେଶର ମାନ ମର୍ଯ୍ୟାଦାର ଟେକ ରଖୁଥିଲେ। ଏଥିପାଇଁ ତାଙ୍କୁ ଜେଲ ଯିବାକୁ ହେଉ କି ତାଙ୍କ ଘରଦ୍ୱାର ଲୁଟ୍‌ପାଟ୍ ହେଉ ଏଥିପାଇଁ ତାଙ୍କର ଚିନ୍ତା ନଥିଲା।



ଜବାହରଲାଲ ଜେଲରୁ ମୁକ୍ତ ହେଲାବେଳେ

# ୫
# ବାପ ପୁଅ ସମ୍ପର୍କ

ବାପାଙ୍କ ସହିତ ଜବାହରଙ୍କର ସମ୍ପର୍କ ତାଙ୍କ ଜୀବନର ଗୋଟିଏ ମଧୁର ଅନୁଭବ। ବାପ ପୁଅ ଥିଲେ ବନ୍ଧୁ ଭଳି। ସେମାନଙ୍କ ସମ୍ପର୍କରେ ସ୍ନେହ ଆଦର ଥିଲା, ଭୟ ନଥିଲା। ଦୁଇଜଣ ଯାକ ଖୋଲାଖୋଲି କଥାବାର୍ତ୍ତା ହେଉଥିଲେ। ଦୁହେଁ ଦୁହିଁଙ୍କ ଉପରେ ପ୍ରଭାବ ପକାଉଥିଲେ। ଏହାକୁ ଜାଣିଲେ ଜବାହରଙ୍କୁ ଚିହ୍ନିବା ସହଜ ହୋଇଯିବ।

ମୋତିଲାଲ ନେହେରୁ ଥିଲେ ଜଣେ ଭଲ ଓକିଲ। ବହୁତ କମାଉଥିଲେ। ଖୁସିବାସିରେ ରହିବାକୁ ଚାହୁଁଥିଲେ। ଘରେ ବହୁ ପ୍ରକାର ଦେଶୀ ବିଦେଶୀ ରାନ୍ଧଣା ହେଉଥିଲା। ବନ୍ଧୁବାନ୍ଧବ ଆସୁଥିଲେ। ଭୋଜିଭାତ ଲାଗି ରହିଥିଲା। 'ଆନନ୍ଦ ଭବନ'ରେ ସୁଖର ସବୁ ଉପକରଣ ପୂରି ରହିଥିଲା। 'ଆମେ କାହାରିଠାରୁ ଊଣା ନୁହଁ' ସତେ ଯେମିତି ଏହା ହିଁ ଥିଲା ସେ ଘରର ମନକଥା।

ନିଜ ପୁଅ ପାଇଁ ମୋତିଲାଲ ଏମିତି ଜୀବନର କଳ୍ପନା କରୁଥିଲେ। ସେଥିପାଇଁ ପୁଅର ଦେହ ଆଉ ମନ ଟାଣ କରିବାର ସବୁ ପ୍ରକାର ବ୍ୟବସ୍ଥା ସେ କରି ଦେଇଥିଲେ। ଘୋଡ଼ା ଚଢ଼ା ଶିଖିବା ପାଇଁ ଘୋଡ଼ା ଆଉ ସଇସ ଥିଲେ। ପହଁରିବା ପାଇଁ ପୋଖରୀ ଥିଲା। ବୁଦ୍ଧିକୁ ମାଜିବା ପାଇଁ ଭଲ ଭଲ ଶିକ୍ଷକ ଥିଲେ। ବିଲାତର ଭଲ ଭଲ ସ୍କୁଲରେ ତାଙ୍କୁ ପାଠ ପଢ଼ାଗଲା।

କିନ୍ତୁ ଜବାହର ନିଜ ବାପାଙ୍କର ଇଚ୍ଛା ପୂରଣ କରି ପାରିଲେ ନାହିଁ। ମୋତିଲାଲ ତାଙ୍କୁ ଯେମିତି ଗଢ଼ିବାକୁ ଚାହୁଁଥିଲେ, ସେ ତାହା ହେଲେ ନାହିଁ। କଥାବାର୍ତ୍ତା ଆଉ ଖିଆପିଆରେ ଜବାହରଙ୍କର ରୁଚି ଥିଲା କହିଲା ଭଳି। ସଫାସୁତୁରା ରହିବାକୁ ସେ ପସନ୍ଦ କରୁଥିଲେ। ତେବେ ତା'ଛଡ଼ା ତାଙ୍କୁ ଅନ୍ୟ କିଛି ବି

ଆହୁରି ଭଲ ଲାଗୁଥିଲା । ଦେଶ ସେବାର ଟାଣୁଆ ଭାବନା ତାଙ୍କ ମନରେ ଥିଲା । ଏଥିପାଇଁ ସେ ସବୁ କିଛି ଛାଡ଼ି ଚାଲିଯିବାକୁ ତିଆର ଥିଲେ ।

ମୋତିଲାଲ ଦେଶସେବାର ବିରୋଧ କରୁନଥିଲେ । ରାଜନୀତିରେ ଭାଗ ବି ନେଉଥିଲେ । ତେବେ ଏଥିପାଇଁ ସେ ନିଜର ପେଶା ଛାଡ଼ିବାକୁ ରାଜି ନଥିଲେ । ରାଜନୀତି କଥା କେବଳ ଖାଇବା ଟେବୁଲ୍ ପର୍ଯ୍ୟନ୍ତ ଯାଇ ପାରୁଥିଲା । କେବେ କେମିତି ସଭା ସମିତିରେ ବି ମୋତିଲାଲ ଭାଗ ନେଉଥିଲେ । କେବଳ ମୋତିଲାଲ ଯେ ଏମିତି କରୁଥିଲେ, ତା' ନୁହେଁ । ସେ ସମୟର ସବୁ ଲୋକ ଥିଲେ ଏମିତି ।

ମୋତିଲାଲ ଚାହୁଁଥିଲେ କି ଜବାହର ବି ଏମିତି ରାଜନୀତି କରନ୍ତୁ । ଭାରତର କେଉଁଠି କଣ ହେଉଛି, ଏକଥା ସେ ନିଜେ ପୁଅକୁ କହୁଥିଲେ । ସାତ ଦିନରେ ଥରେ ପୁଅ ପାଖକୁ ଚିଠି ଲେଖୁଥିଲେ । ସେଥିରେ ବଡ଼ ବଡ଼ ଖବର ପ୍ରାୟ ସବୁ ଦେଉଥିଲେ । ନିଜର ଗେଲବସର ପୁଅ ରାଜନୀତିର କଠିନ ବାଟ ନିଜପାଇଁ ବାଛିନେଉ, ଏକଥା ସେ କେବେ ଚାହୁଁ ନଥିଲେ ।

ଏଣେ ଜବାହର ଏମିତି ସଉକିନିଆଁ ରାଜନୀତି କରିବାକୁ ପସନ୍ଦ କରୁନଥିଲେ । ତାଙ୍କ ମନରେ ଦେଶ ପ୍ରେମର ନିଆଁ ଢ଼ହକୁଥିଲା । ସେ କିଛି ଗୋଟାଏ କରିବାକୁ ଚାହୁଁଥିଲେ । ସମାଜକୁ ବଦଳାଇ ଦେବାକୁ ଇଚ୍ଛା କରୁଥିଲେ । ତେବେ ଖାଲି ଭାଷଣ ଦେଇ ନୁହେଁ, ବରଂ ସମାଜକୁ ଚିହ୍ନାଇ ଆଉ ତାକୁ ଶିଖାଇ ମଣାଇ ସେ ଏହି କାମଟିକୁ କରିବାକୁ ଚାହୁଁଥିଲେ ।

କେମିତି ରାଜନୀତି କରିବ- ଏ ବିଷୟରେ ବାପ ପୁଅଙ୍କର ମତ ଅଲଗା ଥିଲା । ଏଥିପାଇଁ ଆରମ୍ଭରୁ ଦୁହିଁଙ୍କ ଭିତରେ କିଛି ଟଣାଟଣି ବି ଲାଗିଲା । ହୁଏତ ମୋତିଲାଲ ନିରାଶ ହୋଇଥିବେ । ତାଙ୍କର ଏକୋଇର ବଳା ଫୁଲଶେଯ ଛାଡ଼ି କଣ୍ଟା ବିଛା ରାସ୍ତାର ବାଟୋଇ ହେବାକୁ ଯାଉଛି ! ମୋତିଲାଲଙ୍କ ପ୍ରତିପତ୍ତି ଯୋଗୁଁ ଜବାହର ବି ବେଶ୍ ବଡ଼ ବଡ଼ ମକଦ୍ଦମା ପାଇବାକୁ ଆରମ୍ଭ କରିଥିଲେ । ମୋତିଲାଲ ଯେତେବେଳେ ପ୍ରଥମେ ଓକିଲାତି ଆରମ୍ଭ କରିଥିଲେ, ସେତେବେଳେ ତାଙ୍କର ଫିସ୍ ଥିଲା ପାଞ୍ଚଟଙ୍କା । ଜବାହରଙ୍କର ପ୍ରଥମ ଫିସ୍ ଥିଲା ପାଞ୍ଚଶହ ଟଙ୍କା । ତେବେ ଓକିଲାତିରେ ତାଙ୍କର ମନ ନଥିଲା । ଅଳ୍ପ କେଇଟା ଦିନରେ ସେ ସବୁ ଛାଡ଼ି ଛୁଡ଼ି ଦେଇ ସ୍ୱାଧୀନତା ଲଢ଼େଇକୁ ଡ଼େଇଁ ପଡ଼ିଲେ ।

ମୋତିଲାଲ ଦୁଃଖ ପାଇଲେ । ମାତ୍ର ସେ କେବଳ କିଛି ସମୟ ପାଇଁ । ଅଳ୍ପଦିନ ଭିତରେ ସେ ଜବାହରଙ୍କର ଚିନ୍ତାକୁ ବୁଝିପାରିଲେ । ଏଥିରେ ଗାନ୍ଧୀଜୀଙ୍କର

ବହୁତ ପ୍ରଭାବ ଥିଲା। ସେ ନିଜେ ସବୁ ସୁଖ ସୁବିଧା ଛାଡ଼ିଦେଇ ଜବାହରଙ୍କର ଦୁର୍ଗମ ବାଟରେ ଚାଲିବାକୁ ଲାଗିଲେ। ଏମିତି ବାପ ପୁଅ ଦିହେଁ ଗୋଟିଏ ବାଟର ବାଟୋଇ ହୋଇଗଲେ। ଘରେ ଯେତେ ବିଦେଶୀ ଲୁଗାଥିଲା, ସବୁ ଅସହଯୋଗ ଆନ୍ଦୋଳନ ବେଳେ ପୋଡ଼ି ଦିଆଗଲା।

ବାପ ପୁଅ ଦୁହିଁଙ୍କର ରାଜନୈତିକ ଚିନ୍ତାଧାରା କିଭଳି ଅଲଗା ଥିଲା, ତାହା ୧୯୦୭ ମସିହାର କିଛି ଘଟଣାରୁ ଜଣାଯାଇଥାଏ। ମୋତିଲାଲଙ୍କୁ ଉତ୍ତରପ୍ରଦେଶ କଂଗ୍ରେସ ସମ୍ମିଳନୀର ସଭାପତି କରିଦେବାକୁ ସ୍ଥିର ହେଲା। ସେ ଜବାହରଲାଲଙ୍କୁ ଲେଖିଲେ, ''ବାଧ ହୋଇ ମୁଁ ଏହି ଦାୟିତ୍ୱ ନେଉଛି। ମୋ ପାଇଁ ଏହା ସମ୍ପୂର୍ଣ୍ଣ ନୂଆ କଥା। ବନ୍ଧୁମାନେ ମୋଠାରେ ଯେଭଳି ଆଶା ରଖିଛନ୍ତି, ତାହା ସଫଳ କରିପାରିବି କି ନାହିଁ, ତା' ମୁଁ ଜାଣେନା।''

ବାପାଙ୍କୁ ରାଜନୀତି କ୍ଷେତ୍ରରେ ଦେଖି ଜବାହର ବହୁତ ଖୁସି ହେଲେ। ଉତ୍ତରରେ ସେ ଲେଖିଲେ, ''ମୋର ବିଶ୍ୱାସ, ଆପଣ ଅନ୍ୟ କାମରେ ଯେମିତି ସଫଳ ହୋଇଛନ୍ତି, ଏ ନୂଆ କାମରେ ମଧ୍ୟ ସେମିତି ସଫଳ ହେବେ। ଏ କ୍ଷେତ୍ରକୁ ଆସିବା ପାଇଁ ଆପଣ ଏମିତିରେ ବହୁତ ଡ଼େରି କରି ଦେଇଛନ୍ତି। ମୁଁ ଭାବୁଛି ଆଗକୁ ଏଇଥିପାଇଁ ଆପଣଙ୍କର ଉତ୍ସାହ ଅଧିକ ହେବ।''

ସୁବିଧା ଆଉ ସାବଧାନ- ଏ ଦୁଇଟି ଚିଜ ଜବାହରଙ୍କୁ ସେତେ ସୁହାଉ ନଥିଲା। ଏଥିପାଇଁ ମୋତିଲାଲ ବହୁତ ଚିନ୍ତା କରୁଥିଲେ। ବିଶ୍ୱ ବିଦ୍ୟାଳୟରେ ପଢୁଥିବା ବେଳେ 'ମଜ୍‌ଲିସ୍' ଠାରୁ ଦୂରେଇ ରହିବାକୁ ସେ ପୁଅ ପାଖକୁ ଲେଖିଥିଲେ। ଭାରତୀୟ ଛାତ୍ରମାନେ ମିଶି ଏହି 'ମଜଲିସ୍' ସଂସ୍ଥାଟିକୁ ଗଢ଼ିଥିଲେ। ସେଠାରେ ଭାରତର ରାଜନୀତି ବିଷୟରେ ଆଲୋଚନା ହେଉଥିଲା, ଜବାହର ସେଥିରୁ ଦୂରରେ ରହିପାରିଲେ ନାହିଁ। ପାଖରୁ ତାକୁ ଦେଖିଲେ। ତେବେ ସେଠାରେ କଥା ତୁଳନାରେ କାମ ବହୁତ କମ୍ ହେଉଥିଲା। ଜବାହର ତାକୁ ଆଉ ସେତେ ଅମଳ ଦେଲେ ନାହିଁ।

ଭାରତର ରାଜନୀତିରେ ଦୁଇ ପ୍ରକାରର ଲୋକ ଥିଲେ। ତହିଁରୁ ଦଳେ ଆଇନ୍ ଅଧିକାର ଭିତରେ ରହି ନିଜର ଦାବୀ ସାବ୍ୟସ୍ତ କରୁଥିଲେ। ଏମାନେ ଥିଲେ ନରମ ପନ୍ଥୀ। ଆର ଦଳ ଅଧିକାର ହାସଲ କରିବା ପାଇଁ ଲଢ଼େଇ କରିବାକୁ ଚାହୁଁଥିଲେ। ଏମାନଙ୍କୁ ଚରମପନ୍ଥୀ କୁହାଯାଉଥିଲା। ମୋତିଲାଲଙ୍କ ଚିନ୍ତା ନରମପନ୍ଥୀମାନଙ୍କ ସହିତ ମିଶୁଥିଲା। ଏଣେ ଜବାହର ଚରମ ପନ୍ଥୀଙ୍କର ଅଧିକ ନିକଟବର୍ତ୍ତୀ ଥିଲେ। ଏଇ ମତଭେଦ ବେଳେବେଳେ ବାପ ପୁଅଙ୍କର ସମ୍ପର୍କକୁ

କଟୁ କରି ଦେଉଥିଲା। ଏହି କାରଣରୁ ୧୯୦୭-୦୮ ମସିହାରେ ଦୁହିଁଙ୍କ ଭିତରେ କଡ଼ା ଆଲୋଚନା ହେଲା। ଶେଷରେ ମୋତିଲାଲ ଲେଖିଲେ, "ମୁଁ ତମର ରାଜନୀତିକୁ ପସନ୍ଦ କରୁନାହିଁ। ଏଥିପାଇଁ ବେଳେବେଳେ ନିଜ ପ୍ରକୃତି ଅନୁସାରେ କଡ଼ାକଥା କହି ପକାଉଛି। ଏସବୁ କିଛି ନୁହେଁ। ତମ ପାଇଁ ମୋର ସ୍ନେହ ସବୁ ଦିନର। ଯେ ପର୍ଯ୍ୟନ୍ତ ମୁଁ ପୂରା ବଦଳି ନ ଯାଇଛି, ସେଥିରେ ବିଶେଷ କିଛି ଅନ୍ତର ହେବ ନାହିଁ।"

ଗାନ୍ଧୀଜୀଙ୍କ ଡ଼ାକରାରେ ଜବାହର ସତ୍ୟାଗ୍ରହରେ ଯୋଗ ଦେବା ପାଇଁ ଠିକ୍ କଲେ। ଏହାକୁ ଗ୍ରହଣ କରିନେବା ମୋତିଲାଲଙ୍କ ପାଇଁ ସହଜ ନଥିଲା। ତାଙ୍କର ଗୋଟିଏ ବୋଲି ପୁଅ ଜେଲ୍ ଯାଉ, ମୋଟାରୋଟା ଖାଇ, ଭୂଇଁରେ ଶୋଉ- ଏ କଥା ସେ ଭାବି ପାରୁ ନଥିଲେ।

ମୋତିଲାଲ ପୁଅକୁ ବୁଝାଇଲେ। କହିଲେ, ଦେଖ, ବୁଝି ବୁଝାରି କାମ କର। ତମ ମା ବେମାର ଅଛନ୍ତି, ତମେ ଜେଲ ଗଲେ, ତାଙ୍କ ମନର ଅବସ୍ଥା କ'ଣ ହେବ? ତମ ବାପ ବୁଢ଼ା ହେଉଛି, ତା ଓକିଲାତିର ଦାୟିତ୍ୱ କିଏ ନେବ? ତମର ଯୁବତୀ ସ୍ତ୍ରୀ ଆଉ ଛୋଟ ଝିଅ- ଏମାନଙ୍କ କଥା ତ ପୁଣି ଭାବିବ।

ଜବାହରଙ୍କ ମନକୁ ଟହଲାଇ ଦେବା ପାଇଁ ଏସବୁ କଥା କୁହାଯାଇଥିଲା। ଦେଖିଲେ, ଏସବୁ ମୋଟେ କାଟୁ କରୁ ନାହିଁ। ତେଣୁ ଗାନ୍ଧୀଜୀଙ୍କୁ ଡ଼ାକିଲେ। ଘଣ୍ଟା ଘଣ୍ଟା ଧରି କଥାବାର୍ତ୍ତା ଚାଲିଲା। ଯେଉଁଥିରେ ମୋତିଲାଲଙ୍କର ଦୁଃଖ ହେବ, ସେଭଳି କାମ ଏବେ ନ କରିବାକୁ ଗାନ୍ଧୀଜୀ ତାଙ୍କୁ ଉପଦେଶ ଦେଲେ।

ଜାଲିଆନାବାଲା ବାଗ୍‌ର ଗୁଳିକାଣ୍ଡ ଆଉ ପଞ୍ଜାବରେ ହୋଇଥିବା ଅତ୍ୟାଚାର ମୋତିଲାଲଙ୍କ ଚିନ୍ତାଧାରାକୁ ପୂରା ବଦଳାଇ ଦେଲା। ଇଂରେଜମାନଙ୍କଠୁ ନ୍ୟାୟ ମିଳିବ ବୋଲି ସେ ଭାବୁଥିଲେ। ଏ ଦୁଇଟି ଘଟଣା ଦେଖି ତାଙ୍କର ବିଶ୍ୱାସ ଦୋହଲିଗଲା। ଏଥର ସେ ଆଇନ୍‌ର ସୀମା ଭିତରେ ରହି ଲଢ଼େଇ କରିବା କଥା ବି ଭାବୁ ନଥିଲେ। ପୁଅ ଭଳି ସେ ବି ଏଥର ସିଧାସଳଖ ଲଢ଼େଇ ମଇଦାନ୍‌କୁ ଡ଼େଇଁ ପଡ଼ିଲେ। ବାପ ପୁଅଙ୍କ ଭିତରେ ମନର ଯେଉଁ ଅମେଳ ଥିଲା, ତାହା ଶେଷ ହୋଇଗଲା।

ଫଳ ଏହା ହେଲା ଯେ, 'ଆନନ୍ଦ ଭବନ'ର ଯେଉଁ ଐଶ୍ୱର୍ଯ୍ୟ ଆଡ଼ମ୍ବର ଥିଲା, ତା' ବନ୍ଦ ହୋଇଗଲା। ଜୀବନ ଧାରାରେ ସରଳତା ଆସିଲା। ବିଦେଶୀ ଆଉ ରେଶମ ଲୁଗା ବଦଳରେ ମୋଟା ଲୁଗା ପିନ୍ଧାଗଲା। ଜବାହର ନିଜ

ଜୀବନରେ ବହୁତ ସଫଳତା ପାଇଛନ୍ତି। ବାପାଙ୍କ ଜୀବନକୁ ପୂରା ବଦଳାଇ ଦେବା ସେଥି ଭିତରୁ ଗୋଟିଏ। ଜଣେ ଅମୀରଙ୍କୁ ସେ ଫକୀର ପରି ସରଳ କରିଦେଲେ।



ଆନନ୍ଦ ଭବନ

# ୨
# ଋଷ ଯାତ୍ରା

ଛୋଟ ଷ୍ଟେସନଟିଏ। ଠିକ୍ ଋଷ ଦେଶର ସୀମାରେ। ଏଇଠି ଋଷର ଅନ୍ୟ ୟୁରୋପୀୟ ଦେଶମାନଙ୍କ ସହିତ ଯୋଗାଯୋଗ। ଷ୍ଟେସନ୍‌ରେ ଗହଳି ଚହଳି ଲାଗି ରହିଥିଲା। ଚାରିଆଡ଼ ନାଲି ନାଲି ପତାକାମାନ ଉଡୁଥିଲା। ଠାଏ ଠାଏ ଭିନ୍ନ ଭିନ୍ନ ଭାଷାରେ ଲେଖା ହୋଇଥିଲା, ''ସୋଭିଏତ୍ ଜନତା ଅତିଥିମାନଙ୍କୁ ସ୍ୱାଗତ କରୁଛନ୍ତି।''

ଯେଉଁ ଗାଡ଼ିଟି ଠିକ୍ ଏଇନେ ପହଞ୍ଚିଥିଲା, ତହିଁରେ ଦୁଇଜଣ ବିଶେଷ ଅତିଥି ଥିଲେ। ଜଣେ ମୋତିଲାଲ ଆଉ ଜଣକ ଜବାହରଲାଲ। ସାଙ୍ଗରେ ଥିଲେ ଜବାହରଙ୍କ ସ୍ତ୍ରୀ କମଳା ଆଉ ଭଉଣୀ କୃଷ୍ଣା। ଦୁଇ ମହିଳା ଭାରତୀୟ ରୀତିରେ ଶାଢ଼ୀ ପିନ୍ଧିଥିଲେ।

ଷ୍ଟେସନ୍‌ରେ ଜମା ହୋଇଥିବା ଲୋକେ ଏଇ ପରିବାରକୁ ଦେଖୁଥିଲେ। ସେମାନଙ୍କ ଆଖିରୁ ସ୍ନେହ ଶ୍ରଦ୍ଧା ଉଚ୍ଛୁଳି ପଡୁଥିଲା। ଗାଡ଼ିରୁ ଓହ୍ଲାଇବା ମାତ୍ରେ ଲୋକେ ଏମାନଙ୍କୁ ଘେରିଗଲେ। ବଡ଼ ପାଟିରେ ଧ୍ୱନିମାନ ଦେଲେ। ଯେଉଁମାନେ ନିଜ ଦେଶପାଇଁ ଲଢ଼ନ୍ତି ସେମାନଙ୍କ ପାଇଁ ଋଷରେ ଅଲଗା ଆଦର ଥିଲା।

ନିଜ ଦେଶ କଥା ମୋତିଲାଲଙ୍କର ମନେ ପଡ଼ିଗଲା। ସ୍ୱାଧୀନତା ଆଉ ଗାନ୍ଧୀଜୀଙ୍କର ବାଣୀ ଜନତାଙ୍କ ନିକଟରେ ପହଞ୍ଚାଇବା ପାଇଁ କିଛି ଦିନ ଆଗରୁ ସେ ସାରା ଦେଶ ଗସ୍ତ କରିଥିଲେ। ଯେଉଁଠିକୁ ଯାଇଥିଲେ, ସେଠି ଏମିତି ଭିଡ଼ ହେଉଥିଲା। ଠିକ୍ ଏମିତି ଆଦର ସମ୍ମାନ ସେଠି ବି ମିଳୁଥିଲା।

ମୋତିଲାଲ ପୁଅଙ୍କ କାନରେ କହିଲେ, ''ଏମାନେ ଠିକ୍ ଆମରି ଲୋକଙ୍କ ଭଳି ଆମକୁ ସ୍ୱାଗତ କରୁଛନ୍ତି, ତୁମକୁ କେମିତି ଲାଗୁଛି ?''

ହୁଏତ ଜବାହରଙ୍କୁ ବି ସେମିତି ଲାଗୁଥିବ। ତେବେ ସେ କଥାଟାକୁ ହସରେ ଉଡ଼ାଇ ଦେବାକୁ ଚେଷ୍ଟା କଲେ। କହିଲେ, "ମୋତେ ଲାଗୁଛି ସେମାନେ କମଳା ଆଉ କୃଷ୍ଣାଙ୍କର ଶାଢ଼ୀ ଆଡ଼େ ଟାଣି ହୋଇ ଆସୁଛନ୍ତି।"

ମନ ଭିତରେ ତାଙ୍କର ଚିନ୍ତାର ଯେଉଁ ତୋଫାନ ଉଠୁଥିଲା, ହସ ଥଟ୍ଟା ଭିତରେ ସେ ତାକୁ ଭୁଲିଯିବାକୁ ଚାହୁଁଥିଲେ। ଋଷରେ ବିଦ୍ରୋହ ହେବାର ଦଶବର୍ଷ ବିତି ଯାଇଥିଲା। ରାଜା (ଜାର୍)ଙ୍କ ମନମାନିଆ ଶାସନ ବଦଳରେ ସେଠି ଏବେ ଖଟିଖିଆ ମୂଲିଆ ମାନଙ୍କର ଶାସନ ଚାଲିଥିଲା। ସାରା ଦୁନିଆଁରେ ହଇ ଚଇ ପଡ଼ିଯାଇଥିଲା। କେହି କେହି ଏହାକୁ ଖୁବ୍ ତାରିଫ୍ କରୁଥିଲେ ତ କିଏ ଅବା ନିନ୍ଦା କରୁଥିଲେ।

ଜବାହର ଏ ବିଷୟରେ ଖୁବ୍ ପଢ଼ାଶୁଣା କରିଥିଲେ। ମୂଲିଆ ମଜଦୁର୍ କେମିତି ଶାସନ କରୁଛନ୍ତି, ଏହା ଦେଖିବା ପାଇଁ ତାଙ୍କର ଖୁବ୍ ଇଚ୍ଛା ଥିଲା। ଏ ବିଷୟରେ ସେ କହିଲେ, "ଏହାକୁ ତମେ ଭଲ କୁହ କି ଖରାପ କୁହ, କିନ୍ତୁ ଦାଆ ଆଉ ହାତୁଡ଼ିର ଏଇ ଦେଶ ମନକୁ ଭାରି ଟାଣେ। ଏହା ଆଡୁ ଆଖି ଫେରାଇ ନେବାକୁ ମନ ଡ଼ାକେ ନାହିଁ। ସେଠି ମୂଲିଆ ମଜଦୁର ଶାସନ କରୁଛନ୍ତି। ବିରୋଧି ମାନଙ୍କର ସବୁ ଚାଲକୁ ସେମାନେ ବିଫଳ କରିଦେଇଛନ୍ତି।"

ଜବାହର ଭାରତରୁ ବିଦେଶୀ ଶାସନର ଅନ୍ତ ଘଟାଇବାକୁ ଚାହୁଁଥିଲେ। ଋଷ ଲୋକେ ରାଜା ରାଜୁଡ଼ା ଶାସନରୁ ମୁକ୍ତି ପାଇଥିଲେ। ସେମାନଙ୍କର ଅଭିଜ୍ଞତା ହୁଏତ ଭାରତର କାମରେ ଲାଗିପାରେ।

ଋଷରେ ସମାଜର ଗୋଟିଏ ନୂଆ ରୂପ ତିଆରି ହେଉଥିଲା। ଶାସନର ନୂଆ ଢ଼ାଞ୍ଚା ଧୀରେ ଧୀରେ ଗଢ଼ି ଉଠୁଥିଲା। ସମସ୍ତଙ୍କୁ ସମାନ ଆଖିରେ ଦେଖିବା ପାଇଁ କୁହାଯାଉଥିଲା। ଏ ସବୁଥିରୁ ବହୁତ କିଛି ଶିଖିବାର ଥିଲା।

ଆଉ ପୁଣି ଋଷ ଆମର ପଡ଼ୋଶୀ। ବେଶ୍ ବଳୁଆ। ସେଠି ଯାହା ଘଟୁଛି, ସେ ସବୁ ଜାଣିବା ବୁଝିବା ଦରକାର ଥିଲା। ପଡ଼ୋଶୀ ମିତ୍ର ହେଉକି ଶତ୍ରୁ ହେଉ, ତା' ଆଡୁ ଆଖି ଫେରାଇ ନେଇ ହେବ ନାହିଁ ତ !

ଯୁବକ ଜବାହର ଏସବୁ ଚିନ୍ତା କରୁଥିଲେ। ତାଙ୍କ ମନର ଆଗ୍ରହ ବଢୁଥିଲା। ଭାରତ ସ୍ୱାଧୀନ ହେବ, ଭାରତରେ ନୂଆ ସମାଜ ଗଢ଼ାହେବ, ଏ ଧାରଣା ତାଙ୍କର ଦୃଢ଼ ହୋଇ ସାରିଥିଲା। ଏଥିପାଇଁ ଯାହା ଯେଉଁଠୁ ଶିଖିବା କଥା, ତାହା ସେ ଶିଖିବା ପାଇଁ ତିଆର ଥିଲେ।

ଏଥିପାଇଁ ଋଷ ବିପ୍ଳବର ଦଶମ ବର୍ଷ ପୂର୍ତ୍ତି ଉତ୍ସବରେ ଯୋଗ ଦେବାପାଇଁ

ତାଙ୍କୁ ଯେତେବେଳେ ନିମନ୍ତ୍ରଣ ମିଳିଲା, ତାକୁ ସେ ଗ୍ରହଣ କରିନେଲେ। ସେ ଋଷକୁ ଅନୁକରଣ କରିବାକୁ ଚାହୁଁନଥିଲେ। ସେ ଜାଣିଥିଲେ ଯେ, ପ୍ରତ୍ୟେକ ଦେଶ ନିଜ ବାଟରେ ଆଗକୁ ବଢ଼ନ୍ତି। ତଥାପି ଯେମିତି ମଣିଷ ମାତ୍ରକେ ଅନ୍ୟଠୁଁ କିଛି ଶିଖିଥାଏ, ସେମିତି ଦେଶ ମାତ୍ରକେ ଅନ୍ୟଠୁଁ କିଛି ଶିଖିପାରେ। ଅଭିଜ୍ଞତା ଆଉ ବିଚାରଧାରାର ଦେଣନେଣ ଦ୍ୱାରା ମଣିଷ ଜୀବନର ଉନ୍ନତି ହୁଏ।

ଏଥର ସେ ଋଷରେ ବେଶୀ ଦିନ ରହି ପାରିଲେ ନାହିଁ। କେବଳ ତିନୋଟି ଦିନ ପରେ ତାଙ୍କୁ ବାହୁଡ଼ିବାକୁ ହେଲା। ମାତ୍ର ସେତିକି ସମୟରେ ଯାହା ଦେଖିଲେ, ତା'ର ଗହୀରିଆ ଛାପ ତାଙ୍କ ମନ ଉପରେ ପଡ଼ିଲା। ଭାରତ ଫେରି ସେ ଏ ବିଷୟରେ କେତୋଟି ଲେଖା ଲେଖିଲେ। ପରେ ସେ ସବୁ ବହି ଆକାରରେ ବାହାରିଲା।

ଜବାହର ସେଠି ଗୋଟିଏ ବଡ଼ କଥା ଦେଖିଲେ। ବିପ୍ଲବ ପରେ ଋଷ ଏଥର ଯୁଦ୍ଧ ବଳରେ ଶାନ୍ତି ଚାହୁଁଛି। ସେ ଲେଖିଲେ, "ସୋଭିଏତ୍ ଦେଶରେ ମୁଁ ଯେଉଁଆଡ଼େ ଯାଇଛି, ସେଠି ଦେଖିଛି ଲୋକେ ଶାନ୍ତି ପାଇଁ ପାଗଳ।" ଜବାହର ବୁଝିଥିଲେ, ଏହା ଦରକାର। ଲୋକେ ଲଢ଼େଇ ଜିତି ପାରନ୍ତି। ତେବେ ନୂଆ ସମାଜ ଗଢ଼ିବାରେ ଏହା ବାଧା ଦିଏ। ସମାଜ ଗଠନ ପାଇଁ ତେଣୁ ଯୁଦ୍ଧ ଏଡ଼ାଇବା ଉଚିତ। ସେ ସମୟରେ ଜବାହର ଯାହା କହିଥିଲେ, ତାହା ଆଜି ବି ସତ ହୋଇ ରହିଛି। ଆଜିତ ପ୍ରାୟ ସାରା ଦୁନିଆଁ ଏହାକୁ ମାନୁଛି।

ଦ୍ୱିତୀୟ କଥା, ଯାହା ତାଙ୍କ ମନକୁ ପାଇଥିଲା, ତାହା ହେଉଛି ସମସ୍ତଙ୍କୁ ସମାନ ଆଖିରେ ଦେଖିବା। ସେଠି ସମସ୍ତେ ସମସ୍ତଙ୍କୁ 'ତୋଭ୍ରାରିଶ୍' ବୋଲି ଡ଼ାକୁଥିଲେ। ଏହାର ଅର୍ଥ ହେଉଛି 'କମ୍‌ରେଡ୍' ବା 'ସାଥୀ'। ଷ୍ଟେସନ୍‌ର କୁଲି ହେଉ ଅବା ହୋଟେଲର ବେହେରା ହେଉ- ସମସ୍ତଙ୍କୁ ଏଇ ନାମରେ ଡ଼ାକାଯାଉଥିଲା। ପୁଣି ଗାଁର ଚାଷୀ ଅବା କାରଖାନାର ମଜ୍‌ଦୁର ଯେତେବେଳେ ରାଷ୍ଟ୍ରପତିଙ୍କ ସହିତ କଥାବାର୍ତ୍ତା ହେଉଥିଲେ, ସେତେବେଳେ ତାଙ୍କୁ ବି ସେଇ 'ତୋଭ୍ରାରିଶ୍' ଡ଼ାକୁଥିଲେ। ରାଷ୍ଟ୍ରପତି ବି ସେମାନଙ୍କୁ ସେଇଆ ଡ଼ାକୁଥିଲେ।

ଖୁବ୍ ଅଳ୍ପ ସମୟ ସେ ଦେଶରେ ରହିଲେ ମଧ୍ୟ ଜବାହର ସେଠା ବିଷୟରେ ବହୁତ ଖବର ଜାଣିଲେ। ସମବାୟ ଚାଷ କେନ୍ଦ୍ରକୁ ଗଲେ। ଚାଷୀମାନଙ୍କର ଉନ୍ନତି ପାଇଁ ସେଠି ଯାହା ଯାହା ହେଉଛି, ସବୁ ଦେଖିଲେ।

ଭାରତ ଭଳି ଋଷରେ ମଧ୍ୟ ବହୁ ଜାତିର ଲୋକ ରହନ୍ତି। ଅଲଗା ଅଲଗା ଭାଷା କୁହନ୍ତି। ସେମାନଙ୍କ ଧର୍ମ ବି ଅଲଗା। ସେମାନଙ୍କ ଖିଆପିଆ

ପିନ୍ଧାପିନ୍ଧି, ରୀତିନୀତି ସବୁ ଅଲଗା। ଦେଶର କିଛି କିଛି ଅଂଶ ବେଶ୍ ଆଗୁଆ। ଆରଭାଗ, ବିଶେଷ କରି ଏସିଆ ଅଞ୍ଚଳ, ବହୁତ ପଛୁଆ ଥିଲେ। ଏ ସମସ୍ତଙ୍କୁ ମିଶାଇ ଗୋଟିଏ ଦେଶ ଗଢ଼ିବା ସେମାନଙ୍କ ପାଇଁ ଯାହା ଥିଲା, ଆମ ଆଗରେ ବି ସେଇ ପ୍ରଶ୍ନ। ତେବେ ସମସ୍ତଙ୍କୁ ଆଗକୁ ଯିବା ପାଇଁ ସୁବିଧା ସୁଯୋଗ ଦିଆଯାଉଥିବା ଦେଖି ଜବାହର ବେଶ୍ ଖୁସି ହେଲେ। ଯେଉଁମାନେ ପଛୁଆ ଥିଲେ, ସେମାନଙ୍କ ଆଡ଼େ ବିଶେଷ ନଜର ଦିଆଯାଉଥିଲା।

ସମାଜରେ ନାରୀମାନେ ସମାନ ସ୍ଥାନ ପାଉଥିଲେ। ଜବାହରଙ୍କ ମନ ଉପରେ ଏହାର ଗହୀରିଆ ଛାପ ପଡ଼ିଲା। ଏହା ସହିତ ସେ ଦେଖିଲେ, ସାକ୍ଷରତା ବଢ଼ିଚାଲିଛି। ସରକାର ଶିକ୍ଷାର ପ୍ରସାର ଉପରେ ବହୁତ ଜୋର୍ ଦେଉଛନ୍ତି। ଭାରତ ଫେରିଆସି ଜବାହାର କହିଲେ, ''ମହିଳାମାନଙ୍କର ସ୍ୱାଧୀନତା ଆଉ ଶିକ୍ଷାର ବିସ୍ତାର ଏ ଦୁଇଟି କଥା ଦେଖି କୁହାଯାଇପାରେ ଯେ, ସୋଭିଏତ୍ ଋଷରେ ଏକ ନୂଆ ସମାଜ ଗଢ଼ି ଉଠୁଛି।''

ଜବାହରଲାଲ ଋଷ୍ ସହିତ ବନ୍ଧୁତା ସ୍ଥାପନ କଲେ। ସେମାନଙ୍କ ଅଭିଜ୍ଞତାରୁ ଶିଖିଲେ। ନିଜ ଅନୁଭବ କଥା ସେମାନଙ୍କୁ ଶୁଣାଇଲେ। ଋଷ୍ ଆଉ ଭାରତ ପଡ଼ୋଶୀ ଦେଶ। ପଡ଼ୋଶୀ ମାନଙ୍କ ଭିତରେ କେବେ କେମିତି ଭୁଲ୍ ବୁଝାମଣା ହୋଇଥାଏ। ଜବାହର ଏହା ଦୂର କରି ଚିନ୍ତା ଭାବନାର ଦେଣନେଣ ପାଇଁ ନୂଆ ବାଟ ଫିଟାଇଲେ। ଆଜି ଏହା କେବଳ ଏ ଦୁଇ ଦେଶ ପାଇଁ ନୁହେଁ, ସାରା ଦୁନିଆଁପାଇଁ ମଙ୍ଗଳଦାୟକ ମନେ ହେଉଛି।



# 10
# ମାଆ ଗଙ୍ଗା

ଏ ବହିର ଆରମ୍ଭରେ ଆମେ କହିଥିଲୁ, ଜବାହରଲାଲ ହେଉଛନ୍ତି ଭାରତର ପରିଚୟ। ଠିକ୍ ସେମିତି ଗାନ୍ଧୀଜୀ ଆଉ ଗଙ୍ଗାଙ୍କୁ ନେଇ ବି ବାହାରେ ଭାରତ ଚିହ୍ନାଯାଏ। ଭାରତରୁ ଗଙ୍ଗାକୁ କିମ୍ବା ଗଙ୍ଗାରୁ ଭାରତକୁ ଅଲଗା କରି ହେବ ନାହିଁ।

'ଗଙ୍ଗା ଯେ ଦେଶେ ବହେ, ଯମୁନା ଯେ ଦେଶେ ବହେ, ସେଇ ମା କୋଳେ ଜନମ ଆମର'- ଗୀତଟି ଆପଣ ଶୁଣିଥିବେ, ହୁଏତ ଗୁଣୁଗୁଣୁ ହୋଇ ଗାଇଥିବେ। ଗଙ୍ଗା ଯେ ଖାଲି ଆଜି ଭାରତର ପରିଚୟ, ତା ନୁହେଁ। ସମୟର ଉଜାଣି ସୁଅରେ ଯେତେ ପଛକୁ ଫେରିବେ, ସବୁଠି ଗଙ୍ଗାକୁ ପାଇବେ।

ଏଇ ଗଙ୍ଗା ନଦୀ ସହିତ ଜବାହରଙ୍କର ସମ୍ପର୍କ ବେଶ୍ ଗାଢ଼। ଜନ୍ମର ପର ମୁହୂର୍ତ୍ତରୁ ଗଙ୍ଗାର କଳକଳ ନାଦ ତାଙ୍କ କାନରେ ପଡ଼ିଥିବ। 'ଆନନ୍ଦ ଭବନ' ଠାରୁ ଗଙ୍ଗା ମୋଟେ ଗୋଟିଏ ମାଇଲ୍ ଦୂରରେ। ନିଜ ଶେଷ ଇଚ୍ଛା ପତ୍ରରେ ଜବାହର ଲେଖିଛନ୍ତି, ''ମୋ ଚିତା ପାଉଁଶରୁ ମୁଠାଏ ଆଲାହାବାଦ ପାଖରେ ବହୁଥିବା ଗଙ୍ଗାରେ ଭସାଇ ଦିଆଯାଉ, ଏହା ମୋର ଇଚ୍ଛା।''

ତାଙ୍କର ମା ମାଉସୀ ଖୁଡ଼ୀ ବଡ଼ ମାଆମାନେ ଗଙ୍ଗାଙ୍କ ମହିମା ବର୍ଣ୍ଣନା କରୁଥିଲେ। ମାଆ ସ୍ୱରୂପରାଣୀ ତ ବହୁ ପୂଜାପାଠ କରୁଥିଲେ। ଗଙ୍ଗା ସ୍ନାନ ପାଇଁ ବାହାରିଲେ, ସାଙ୍ଗରେ ପୁଅକୁ ବି ନେଇ ଯାଉଥିଲେ। ତାଙ୍କର ଜଣେ ଖୁଡ଼ୀଙ୍କୁ ପୁରାଣ ଶାସ୍ତ୍ର କଥା ବହୁତ ଜଣା ଥିଲା। ତାଙ୍କଠାରୁ ଜବାହର ଗଙ୍ଗାଙ୍କ ବିଷୟରେ ବହୁତ କଥା ଶୁଣିଲେ। ପିଲାଦିନେ ଶୁଣିଥିବା ଏଇ ସବୁକଥା ଜୀବନସାରା ତାଙ୍କର ମନେ ରହିଥିଲା। ଗଙ୍ଗା ଯେମିତି ଜବାହରଲାଲଙ୍କର ଗୋଟିଏ ଅଙ୍ଗ

ହୋଇଗଲା ।

ତେବେ ଜବାହରଙ୍କର ମା ଗଙ୍ଗାକୁ ଯେଉଁ ଆଖିରେ ଦେଖୁଥିଲେ ଜବାହର ତା କରୁନଥିଲେ । ସେ ଗଙ୍ଗାକୁ ଭଲ ପାଉଥିଲେ, ପୂଜା କରୁନଥିଲେ । ନିଜ ଚିତା ପାଉଁଶକୁ ଗଙ୍ଗାରେ ଭସାଇ ଦେବା କଥା ସେ ଅବଶ୍ୟ କହିଥିଲେ । ଏ କଥା ବି କହିଥିଲେ ଯେ, ଧର୍ମ ବା ପୂଜା କଥା ଭାବି ସେ ଏହା କରୁନାହାନ୍ତି । ଗଙ୍ଗା ସହିତ ତାଙ୍କର ମା-ପୁଅର ସମ୍ପର୍କ ଥିଲା । ସେ ଲେଖିଛନ୍ତି, ‘‘ଆଲାହାବାଦ ପାଖରେ ବହୁଥିବା ଗଙ୍ଗା ଆଉ ଯମୁନା ସହିତ ପିଲାଦିନରୁ ମୋର ସମ୍ପର୍କ ଗଢ଼ିଉଠିଛି । ମୁଁ ବଡ଼ ହେବା ସାଙ୍ଗେ ସାଙ୍ଗେ ଏ ସମ୍ପର୍କ ଆହୁରି ଗାଢ଼ ହୋଇଛି ।’’

ଗଙ୍ଗାକୁ ଦେଖି ତାକୁ ମନେ ପକାଇ, ତାଙ୍କ ମନକୁ ଯଥେଷ୍ଟ ସାନ୍ତ୍ୱନା ମିଳୁଥିଲା । ନିଜର ବାପା, ମା, ସ୍ତ୍ରୀ କ୍ମାଇଁ ସବୁ ଆପଣାର ଲୋକଙ୍କର ଚିତା ପାଉଁଶ ସେ ଆଲାହାବାଦ ନିକଟବର୍ତ୍ତୀ ଗଙ୍ଗାରେ ଭସାଇ ଦେଇଥିଲେ । ଆଲାହାବାଦ ନିକଟରେ ବହୁଥିବା ଗଙ୍ଗା ଥିଲା ତାଙ୍କର ଅତ୍ୟନ୍ତ ପ୍ରିୟ । ସେଇଥିପାଇଁ ସେ ହିମାଳୟରୁ ବାହାରି ବଙ୍ଗୋପସାଗରରେ ପଡ଼ିଥିବା ସମ୍ପୂର୍ଣ୍ଣ ଗଙ୍ଗାକୁ ଭଲ ପାଉଥିଲେ ।

ଜବାହର ଗଙ୍ଗା କଥା କହିଲାବେଳେ କବିଟିଏ ହୋଇ ଯାଉଥିଲେ । ତାଙ୍କ ମନ ଆବେଗରେ ଭରି ଯାଉଥିଲା । କେତେବେଳେ ଗଙ୍ଗା ତାଙ୍କୁ ମା’ର କୋମଳଛୁଆଁ ଦେଉଥିଲା । ଆଉ କେତେବେଳେ ଅବା ପ୍ରେମିକା ଭଳି ସୁନ୍ଦର ଦେଖା ଯାଉଥିଲା, ପୁଣି କେତେବେଳେ ସେ ଗଙ୍ଗା ଭିତରେ ସାରା ଭାରତକୁ ଦେଖୁଥିଲେ ତ କେତେବେଳେ ଅନନ୍ତର ମହିମା ମଣ୍ଡିତ ରୂପ ।

ଗଙ୍ଗା ବିଷୟରେ ଜବାହର ଯାହା ଲେଖିଛନ୍ତି, ତାହା ଚିରଦିନ ଅଭୁଲା ହୋଇ ରହିବ । ସେ ଲେଖିଛନ୍ତି, ‘‘ଗଙ୍ଗା ମୋତେ ହିମାଳୟର ବରଫ ଢଙ୍କା ଶିଖର ଆଉ ଗହୀରିଆ ଘାଟି କଥା ମନେ ପକାଇ ଦିଏ । ସେଥିରୁ ମୋର ମନେ ପଡ଼େ ଖେତ ଖମାର କଥା, ଯେଉଁଠି ମୋର ଜୀବନ କଟିଛି । ସକାଳର ନାଲି ନାଲି କିରଣରେ ଗଙ୍ଗା ନାଚି ନାଚି ହସି ହସି ବହିଯାଏ । ସଞ୍ଜର ଛାଇ ନଇଁ ଆସିଲେ, ଗଙ୍ଗା ଦେଖାଯାଏ ଉଦାସ ଆଉ ଦୁଃଖୀ । ଶୀତଦିନ ଗଙ୍ଗା କେମିତି ଦୁର୍ବଳ ଆଉ ଲାଜକୁଳୀ ମନେ ହୁଏ । ବର୍ଷା ଆସିଲେ ସେ ଫୁଲି ଉଠେ । ସୁ ସୁ ଗର୍ଜନ ଛାଡ଼େ । ସମୁଦ୍ର ଭଳି ତା’ର ଛାତି ଚଉଡ଼ା ହୋଇଯାଏ ଆଉ ସେ ଠିକ୍ ତାରି ଭଳି ପ୍ରଳୟ ରଚନାର ଶକ୍ତି ବି ପାଇଥାଏ ।’’

ନିଜ ଝିଅକୁ ଲେଖିଥିବା ଗୋଟିଏ ଚିଠିରେ ସେ ଗଙ୍ଗା କଥା କହିଛନ୍ତି ।



ଆଲାହାବାଦରେ ମା'ଙ୍କ-ମୃତ୍ୟୁପରେ ସଙ୍ଗମରେ ସ୍ନାନରତ ନେହେରୁ, ୧୯୩୭

ଆର୍ଯ୍ୟମାନେ ଯେତେବେଳେ ପ୍ରଥମେ ଏହାର କୂଳରେ ପହଞ୍ଚିଲେ, ଏଥିରେ ସେଇ ସମୟର କଥା କୁହାଯାଇଛି। ହଜାର ହଜାର ବର୍ଷ ତଳର ଘଟଣା। ଆର୍ଯ୍ୟମାନଙ୍କୁ ହସିବା ଖେଳିବା ନାଚିବା ଗାଇବା ବହୁତ ଭଲ ଲାଗୁଥିଲା। ସେମାନେ ସୁନ୍ଦରକୁ ଆଦର କରୁଥିଲେ। ଜବାହର ଝିଅକୁ ବୁଝାଇଛନ୍ତି, ''ଆମର ପୂର୍ବଜମାନେ ଗଙ୍ଗାକୁ ଦେଖି କେତେ ଖୁସି ହୋଇଥିବେ, ଏକଥା ଟିକିଏ ମନେ ପକାଇଲୁ!''

ଗଙ୍ଗା ଭାରତର କାଲି ଆଜି ଆଉ ଆସନ୍ତା କାଲି, ଏ ତିନି କାଳର ଚିତ୍ର ଜବାହରଙ୍କ ସାମ୍ନାକୁ ନେଇ ଆସୁଥିଲା। ଏଇଥିପାଇଁ ସେ ଗଙ୍ଗାକୁ ଭଲ ପାଉଥିଲେ। ସେ ଲେଖିଛନ୍ତି, ''ମୋ ପାଇଁ ଗଙ୍ଗା ହେଉଛି ଭାରତର ଅତୀତ-ବିତିଲା ଯୁଗର ଅଭୁଲା କାହାଣୀ- ଏଇ ଅତୀତ ଯୁଗର ବିତିଲା କାହାଣୀକୁ ଭସାଇ ଆଣି ବର୍ତ୍ତମାନ ସଙ୍ଗରେ ଯୋଡ଼ିଦିଏ। ପୁଣି ସବୁକୁ ଗୋଟାଇ ନେଇ ଆଗାମୀ ଯୁଗ ଆଡ଼କୁ ଭସାଇ ନିଏ।''

ଝିଅକୁ ଲେଖିଥିବା ଆଉ ଗୋଟିଏ ଚିଠିରେ ଜବାହର ଗଙ୍ଗାକୁ ପାହାଡ଼ିଆ ଯୁବତୀ ବୋଲି କହିଛନ୍ତି। ପାହାଡ଼ରୁ ପାହାଡ଼ ଘୂରି ବୁଲିବାକୁ ମନ କରି ସେ ଲେଖିଛନ୍ତି, ''ମୁଁ କଣ ଜୀବନରେ ଥରକ ପାଇଁ ହେଲେ ବି ନାଚି ନାଚି ବୁଲୁଥିବା ସେଇ ପାହାଡ଼ୀ ଯୁବତୀ ପାଖରେ ତା' ନିଜ ଘରେ ବସି ପାରିବି? କେବେ ବି ଦେଖି ପାରିବିକି ବରଷା ପାଣିକୁ ଦୁଇ ହାତରେ ଫୋପାଡ଼ି ଖେଳୁଥିବା ତା'ର ସରଳ ରୂପକୁ! କିମ୍ବା ମୁଁ ଗଙ୍ଗାକୁ ଦେଖିଚି ଜଣେ ଶାନ୍ତ ଶିଷ୍ଟ ସ୍ୱଭାବର ନାରୀ ରୂପରେ। କିନ୍ତୁ ତା' ଭିତରେ ନିଆଁ ଅଛି। ଯୌବନର ଉଷ୍ଣତା ଆଉ ଶକ୍ତିରେ ଭରପୂର ଗଙ୍ଗା ଯେ କୌଣସି ବିପଦର ସାମ୍ନା କରିବା ପାଇଁ ସଦା ପ୍ରସ୍ତୁତ। ବେଳେବେଳେ ତା'ର ଶାନ୍ତ ଢ଼େଉ ଉତାଳ ହୋଇ ଉଠେ। ଫାଇଁ ଫାଇଁ ଗର୍ଜନ ଛାଡ଼ି ଦୂର ଦୂରାନ୍ତକୁ ବ୍ୟାପିଯାଏ। ସେତେବେଳେ ତା'ର ଏଇ ରୂପ ଦେଖିବାକୁ ମିଳେ।''

ଜବାହର ଧର୍ମ ଦୃଷ୍ଟିରୁ ଗଙ୍ଗାକୁ ଦେଖୁନଥିଲେ। ତେବେ ଭାରତର କୋଟି କୋଟି ଲୋକ ତାହାର ପୂଜା କରନ୍ତି। ତାରି ପାଣିର ଛିଟା ମୁଣ୍ଡରେ ପକାଇ ନିଜକୁ ପବିତ୍ର ମଣନ୍ତି। ଗଙ୍ଗା କୂଳରେ ମରିଗଲେ ସିଧା ସ୍ୱର୍ଗକୁ ଯିବେ ବୋଲି ବିଶ୍ୱାସ କରନ୍ତି।

ମାଘ ମାସରେ, କୁମ୍ଭ, ଅର୍ଦ୍ଧକୁମ୍ଭ ମେଳା ଉପଲକ୍ଷେ ଲକ୍ଷ ଲକ୍ଷ ଲୋକ ଆଲାହାବାଦ ଆସନ୍ତି। ସଙ୍ଗମରେ ବୁଡ଼ ପକାଇବାକୁ ଯାଆନ୍ତି। ଗଲାବେଳେ 'ଗଙ୍ଗା ମାତାକି ଜୟ' ବୋଲି କହୁଥାଆନ୍ତି। ଜବାହର ଏହା ବାରମ୍ବାର ଦେଖିଥିଲେ।

ଏଥିପାଇଁ ସେ କେବେ ବିରକ୍ତ ହୋଇ ନାହାନ୍ତି। ଏହାକୁ ଅନ୍ଧ ବିଶ୍ୱାସ ବୋଲି କହି ନିନ୍ଦା ମଧ୍ୟ କରି ନାହାନ୍ତି। ଏଥିରେ ସେ ଭାରତର ଅଗଣିତ ଜନତାର ସିଧାସାଦା ସରଳ ମନକୁ ଦେଖୁଥିଲେ। ସେ ଏହାକୁ ଆଦର କରୁଥିଲେ ଆଉ ମନେ ବି ରଖିଥିଲେ।

ମେଳା-ଯାତ୍ରୀମାନଙ୍କର ବିଶ୍ୱାସର ବଳ ଜବାହରଙ୍କ ମନ ଉପରେ ଛାପ ପକାଉଥିଲା। ଏହି ବିଶ୍ୱାସରୁ ସେମାନଙ୍କୁ ଛିଣ୍ଡାଇନେବା କଥା ଜବାହର କେବେ ଭାବୁ ନଥିଲେ। ବରଂ ଅତୀତ ସହିତ, ପୁରୁଣା ରୀତିନୀତି ସହିତ କେମିତି ସମ୍ପର୍କ ରଖିବାକୁ ହେବ, ଏକଥା ସେ ସେମାନଙ୍କୁ ଦେଖି ଜାଣୁଥିଲେ। ଏ ବିଷୟରେ ସେ ବହୁତ ଭାବିଲେ।

ଶେଷରେ ଠିକ୍ କଲେ, "ଭାରତ ତା'ର ପରମ୍ପରାର ଏଇ ପୁରୁଣା ଶିକୁଳିକୁ ଛିଡ଼ାଇ ଦେବା ଉଚିତ। କାରଣ ସେଇ ହିଁ ତାକୁ ବାନ୍ଧି ରଖୁଚି। ଆଗକୁ ଯିବାକୁ ଦେଉନାହିଁ; ଆଉ ପାଦେପାଦେ ବାଧା ସୃଷ୍ଟି କରୁଚି।"

ସବୁ ପୁରୁଣା ଚିଜଠାରୁ ସମ୍ପର୍କ ତୁଟାଇଦେବା କଥା କିନ୍ତୁ ଏଥିରେ କୁହାଯାଇ ନାହିଁ। ଅତୀତ ଜବାହରଙ୍କୁ ଖୁବ୍ ଭଲ ଲାଗୁଥିଲା। କାରଣ ତହିଁରେ ଗର୍ବ କରିବାପାଇଁ ଅନେକ କଥା ଥାଏ। ତାକୁ ସେ ସାଇତି ରଖିବାକୁ ଚାହୁଁଥିଲେ। ଗଙ୍ଗା ଗଲାକାଲି ଆଉ ଆସନ୍ତା କାଲିକୁ ମିଶାଇ ଦେବାଭଳି ତାଙ୍କୁ ଜଣା ପଡୁଥିଲା। ନିଜକୁ ଜବାହର ଦେଖୁଥିଲେ, ସମୟ ଶିକୁଳୀର ଗୋଟିଏ କଡ଼ି ଭଳି। ଏଥିପାଇଁ ସେ ଗଙ୍ଗା ସହିତ ଏକ ହୋଇଯିବା ପାଇଁ ଚାହୁଁଥିଲେ।

ଭାରତର ଯେଉଁ ଲମ୍ବା ଇତିହାସ ରହିଚି, ଗଙ୍ଗା ହେଉଛି ତା'ର ପ୍ରତୀକ। ତାରି ଢେଉରେ ଜବାହର ଦେଖୁଥିଲେ ଭାରତୀୟ କଳା, ସଙ୍ଗୀତ, ପୁରାଣ ଇତିହାସର ଚିତ୍ରକୁ।

ବିଦେଶୀ ସରକାର ଗଙ୍ଗାରେ ବୁଡ଼ ପକାଇବା ଉପରେ ନିଷେଧ ଆଦେଶ ଜାରି କରିଥିଲେ। ଜବାହରଙ୍କୁ ଏହା ଭଲ ଲାଗୁନଥିଲା। ଏଥିପାଇଁ ସଂଘର୍ଷ ତାଙ୍କ ଜୀବନର ଏକ ବିଶେଷ ଘଟଣା। ୧୯୨୪ ମସିହାରେ ମେଳା ସମୟରେ ତ୍ରିବେଣୀରେ ବୁଡ଼ ପକାଇବା ପାଇଁ ସରକାର ଅନୁମତି ଦେଲେ ନାହିଁ। ଧର୍ମ ବ୍ୟାପାରରେ ଏମିତି ମନା କରିଦେବାଟା ପଣ୍ଡିତ ମଦନମୋହନ ମାଲବ୍ୟଙ୍କୁ ବହୁତ ବାଧିଲା। ସେ ଧାରଣା ଦେଲେ। ସରକାରୀ ଆଦେଶକୁ ମାନିବେ ନାହିଁ ବୋଲି ଠିକ୍ କଲେ।

ତ୍ରିବେଣୀ ବୁଡ଼ ସହିତ ଧର୍ମର ଯେଉଁ ସମ୍ପର୍କ, ଜବାହର ତାକୁ ମାନୁ

ନଥିଲେ। ତେବେ ସରକାରଙ୍କର ଏ ଅନ୍ୟାୟ ହୁକୁମ୍ ମାନିବାକୁ ସେ ତିଆର ନଥିଲେ। ସେଥିପାଇଁ ମାଳବ୍ୟଙ୍କ ସହିତ ସେ ଧାରଣାରେ ବସିଗଲେ। କେବଳ ସେତିକି ନୁହେଁ। ପୁଲିସ୍‌ର ଘେର ଭାଙ୍ଗି ନଦୀ ଭିତରକୁ ଡ଼େଇଁ ପଡ଼ିଲେ। ଗାଧୋଇ ପଡ଼ି ପୁଣି ଧାରଣା ଦେଲେ। ତା'ପରେ ମାଳବ୍ୟ ମଧ୍ୟ ସେଇଆ କଲେ।

ଜବାହର ଏମିତି ଗଙ୍ଗା ପାଇଁ ଅନ୍ୟମାନଙ୍କ ମନରେ ଯେଉଁ ଶ୍ରଦ୍ଧା ଥିଲା ତାହାର ଆଦର କରୁଥିଲେ। ତାର ରକ୍ଷା ପାଇଁ ଦରକାର ହେଲେ ଲଢ଼େଇ ବି କରୁଥିଲେ।



# ୧୧
# ଚାଚା ନେହେରୁ

ହିନ୍ଦୀରେ ଚାଚା କାହାକୁ କହନ୍ତି, ଏହା ସମସ୍ତେ ଜାଣନ୍ତି। ବାପାଙ୍କର ସାନଭାଇ ହେଉଛନ୍ତି ଚାଚା, ଯାହାକୁ ଆମେ କହୁ ଦାଦା ବା କକା। ଆଉ ଏକ ପ୍ରକାରର ଚାଚା ଅଛନ୍ତି। ଗାଁ ଗହଳିରେ କିଛି ଲୋକ ଥାଆନ୍ତି, ପିଲାମାନେ ଯାହାଙ୍କୁ ଭାରି ଭଲ ପାଆନ୍ତି। ଏମିତି ମଣିଷ ଭାରି କାମିକା। କିଛି ଅବୁଝା ରହିଗଲେ ବୁଝାଇଦିଅନ୍ତି। ଦରକାର ପଡିଲେ ସାହାଯ୍ୟ କରନ୍ତି। ତାଙ୍କ ଉପରେ ନିର୍ଭର କରାଯାଇପାରେ।

ପିଲାଙ୍କ ପାଖରେ ଏମାନଙ୍କର ବହୁତ ଆଦର। ଖାଲି ପିଲା କାହିଁକି, ବଡ଼ମାନେ ବି ଏମାନଙ୍କ କଥା ମାନନ୍ତି। କାରଣ ଏମାନେ ସବୁ ବୁଝନ୍ତି, ଭଲ ଭାବେ ବୁଝାଇ ପାରନ୍ତି। ସ୍କୁଲ ଶିକ୍ଷକଙ୍କଠାରୁ ସେ କୌଣସି ଗୁଣରେ ନ୍ୟୂନ ନୁହନ୍ତି। ଶିକ୍ଷକ ତ ଖାଲି ବହି ପଢ଼ାନ୍ତି। ସେଥିରେ ଯାହା ଲେଖାଯାଇଛି, ସେଇଆ ବୁଝାନ୍ତି। ତେବେ ଚାଚା ଜୀବନର ସବୁକଥା ନିଜେ ଯେମିତି ବୁଝନ୍ତି, ସେମିତି ଅନ୍ୟମାନଙ୍କୁ ବୁଝାଇ ବି ପାରନ୍ତି।

କିଛି ଲୋକ ନିଜ ଘରେ ଚାଚା ହୁଅନ୍ତି। କିଛି ଲୋକ ସାହୀର ଚାଚା। କିଛି ସାରା ଗାଆଁର, ଆଉ କିଛି ଏମିତି, ଯାହାଙ୍କୁ ସାରା ଦେଶ ଚାଚା ବୋଲି ମାନନ୍ତି। ଯିଏ ଯେତେ ବେଶୀ ଲୋକଙ୍କର ପତିଆରା ପାଇଲା, ସିଏ ସେତେ ଅଧିକ ଲୋକଙ୍କର ଚାଚା। ତା'ଠୁ ସମସ୍ତେ ଶିଖନ୍ତି। ତା' କଥା ବି ମାନନ୍ତି।

ଜବାହର ଥିଲେ ଏମିତି ଚାଚା। କେବଳ ପିଲାମାନଙ୍କର ନୁହେଁ। ସାରା ଦେଶର। ତାଙ୍କଠୁଁ ଦେଶ ଯାହା ଶିଖିଛି, ଆଉ କାହାରିଠୁ ସେତିକି ଶିଖିନାହିଁ।

ଯଦି ତାଙ୍କଠୁଁ ଅଧିକ କେହି ଥିଲେ, ତେବେ ସେ ହେଉଛନ୍ତି ଗାନ୍ଧୀଜୀ। ତାଙ୍କୁ ସାରା ଦେଶ 'ବାପୁ' ବୋଲି କହୁଥିଲା। ସେ ହେଉଛନ୍ତି 'ଜାତିର ପିତା'।

ଭାବନା ଚିନ୍ତାରେ ଏ ଦୁହେଁ କିନ୍ତୁ ସଦାବେଳେ ଏକ ନଥିଲେ। ତେବେ ଅନ୍ୟମାନଙ୍କୁ ଯାଦୁବଳରେ ମୁଗ୍ଧ କରିବାର ଶକ୍ତି ଦୁହିଁଙ୍କର ଥିଲା କାହିଁକି, ଏ ପ୍ରଶ୍ନର ଉତ୍ତର ସହଜ ନୁହେଁ। କେବଳ ଏତିକି କୁହାଯାଇପାରେ ଯେ, ସେମାନଙ୍କର କଥାବାର୍ତ୍ତା, ମିଳାମିଶାର ଏକ ବିଶେଷ ଗୁଣ ଥିଲା। ଏମିତି ଗୁଣ, ଯାହା ଶିକ୍ଷକ ବା ଗୁରୁଙ୍କଠାରେ ଥାଏ। ସେଇଥିପାଇଁ ଲୋକେ ତାଙ୍କ ଉପରେ ଭରସା କରୁଥିଲେ। ତାଙ୍କ କଥାକୁ କେହି ଏଡ଼ି ଦେଇ ପାରୁନଥିଲେ। ତାଙ୍କ କଥାରେ ରାଜି ନହେଲେ ବି ତାଙ୍କୁ ବୁଝିବାକୁ ଚେଷ୍ଟା କରୁଥିଲେ।



ପିଲାମାନଙ୍କ ସହ ନେହେରୁ

ତାଙ୍କ ଭାଷଣରୁ ଏଇ ଗୁଣର କିଛି ପରିଚୟ ମିଳିଥାଏ। ସେ ବେଶୀ ପାଟି କରୁନଥିଲେ କି ମଞ୍ଚ ଉପରେ ଡେଇଁ କୁଦି ଲୋକଙ୍କୁ ଭଣ୍ଡୁନଥିଲେ। ବଡ ବଡ ଶବ୍ଦର ଆଡମ୍ବର ବି ତାଙ୍କର ନଥିଲା। ଶୁଣିବାବାଲାଙ୍କୁ ଲାଗୁଥିଲା ଯେମିତି ସେ ତାଙ୍କୁ କଥାହିଁ କହୁଛନ୍ତି। ଆକାଶରୁ ପାତାଳ ପର୍ଯ୍ୟନ୍ତ କଥା ସରଳ ଭାଷାରେ ବୁଝାଉଛନ୍ତି। ଏମିତି ସେ ସାରା ଦୁନିଆଁର ନାନା ବିଷୟ ତାଙ୍କୁ ଜଣାଇ ଦେଉଥିଲେ।

ଜବାହର କହୁଥିଲେ, ''ଲୋକେ କ'ଣ ଭାବୁଛନ୍ତି, ସେ ଚିନ୍ତା ମୋର ନାହିଁ। ମୋର ଚିନ୍ତା, ସେମାନେ ଭାବୁଛନ୍ତି କି ନାହିଁ।'' ସେ ଚାହୁଁଥିଲେ, ଲୋକେ ଯାହା କରୁଛନ୍ତି, ଭାବି ବିଚାରି କରନ୍ତୁ। ନଭାବି ନଚିନ୍ତି ତାଙ୍କୁ ଆଦର ନକରନ୍ତୁ।

ଯେତେବେଳେ ଜବାହର କଂଗ୍ରେସର ସଭାପତି ହେଲେ, ଚାରିଆଡେ ଜୟ ଜୟକାର ପଡି ଯାଇଥିଲା। ତାଙ୍କୁ ଦେଖିବା ମାତ୍ରେ ଲୋକେ 'ସଭାପତିଙ୍କର ଜୟ' ବୋଲି ପାଟି କରୁଥିଲେ। ଆଦର ଯେତେବେଳେ ପୂଜାର ରୂପ ନେଲା, ସେତେବେଳେ ଜବାହର ଚିନ୍ତିତ ହୋଇପଡିଲେ। ତାଙ୍କୁ ଲାଗିଲା,ତାଙ୍କ ପ୍ରତି ଆଦର ଭାବ ଯୋଗୁଁ ଲୋକେ ଚିନ୍ତା କରିବା ଭୁଲିଯିବେ। ଲୋକଙ୍କର ଏହି ଭୁଲ ଭାଙ୍ଗିବାକୁ ସେ ଗୋଟିଏ ଲେଖା ଲେଖିଲେ।

ସେଥିରେ ସେ କହିଲେ, ''ଆଗକୁ ଜବାହର ବହୁତ ଭଲ କାମ କରିପାରନ୍ତି। କିନ୍ତୁ ଆମେ ତାଙ୍କୁ ବିଗାଡି ଦେବା ଉଚିତ ନୁହେଁ। ବହୁତ ମାନସମ୍ମାନ ପାଇଲେ ସେ ବାଟ ଭୁଲି ଯାଇପାରନ୍ତି। ତାଙ୍କର ଅହଂକାରକୁ ଆମକୁ ରୋକିବାକୁ ହେବ। ଆମ ଦେଶରେ ଏକଛତ୍ରବାଦ ଲୋଡା ନାହିଁ।''

ନିଜ ନାଆଁରେ ସେ ଏହି ଲେଖା ଲେଖିନଥିଲେ। ସେଥିରେ ଭଲ ଫଳ ମିଳିବ ନାହିଁ ବୋଲି ସେ ଜାଣିଥିଲେ। ଲୋକଙ୍କର ଚିନ୍ତାକୁ ଜଗାଇବା ପାଇଁ ସେ ଚାହୁଁଥିଲେ। ଲୋକଙ୍କୁ ଚମକାଇ, ସେମାନଙ୍କୁ ଭାବିବାପାଇଁ ବାଧ୍ୟ କରିବା ତାଙ୍କର ଇଚ୍ଛା ଥିଲା। ନିଜ ନାଆଁରେ ଲେଖିଥିଲେ ଏହା ହୋଇନଥାନ୍ତା। ଓଲଟି ଲୋକେ ତାଙ୍କୁ ମୁଣ୍ଡ ଉପରେ ବସାଇ ଆହୁରି ଅଧିକ ନାଚି ଥାଆନ୍ତେ।

ବହୁତ ବଡ ବଡ କଥା ସେ ଲୋକଙ୍କୁ ସରଳ ଭାବରେ ବୁଝାଇ ଦେଉଥିଲେ। ଏମିତି ଭାବରେ ବୁଝାଉଥିଲେ ଯେ, ଲୋକଙ୍କୁ ସେ ଯେ କିଛି ଶିଖାଉଛନ୍ତି, ଏହା ସେମାନେ ଜାଣି ପାରୁ ନଥିଲେ।

ଦେଶ ସ୍ୱାଧୀନ ହେଲା, ଆଉ ଭାଗ ଭାଗ ବି। ଏଥିପାଇଁ କେତେଲୋକ

ସେମାନଙ୍କର ଘରଦ୍ୱାର ହରାଇଲେ। ଏମିତି ଲୋକଙ୍କୁ ଥଇଥାନ କରାଯାଉଥିଲା। ଘର ମିଳିବା ପର୍ଯ୍ୟନ୍ତ ତାଙ୍କୁ କ୍ୟାମ୍ପରେ ରଖାଯାଉଥିଲା। ଆମେରିକାରୁ ଜଣେ ଲୋକ ଆସିଲେ। ବେଘର ଲୋକଙ୍କୁ କେମିତି ଥଇଥାନ କରାଯାଉଛି, ଏହା ସେ ଦେଖିବାକୁ ଚାହୁଁଥିଲେ।

ଯେଉଁମାନେ ଏ କାମ କରୁଥିଲେ, ସେ ସେମାନଙ୍କ ପାଖକୁ ଗଲେ। ଜଣେ ବିଦେଶୀ ଲୋକଙ୍କୁ କ୍ୟାମ୍ପ ବୁଲାଇ ଦେଖାଇବେ କି ନାହିଁ, ଏ ବିଷୟରେ ସେମାନେ ଚିନ୍ତାରେ ପଡିଗଲେ। ଏଥିରେ ଦେଶର ସମ୍ମାନ ହାନି ହୋଇପାରେ। ଜଣେ ଭଉଣୀ ଜବାହରଙ୍କ ପାଖକୁ ଏଇ ପ୍ରଶ୍ନ ନେଇ ଗଲେ। ନିଜ ସାଥିମାନଙ୍କର ଚିନ୍ତା ବିଷୟରେ ତାଙ୍କୁ ଜଣାଇଲେ।

ଜବାହର ତାଙ୍କୁ ବସାଇଲେ, କହିଲେ, "ସେ କିଏ ତମେ ଜାଣିଚ? ସେ ଆମେରିକାରୁ ଆସିଛନ୍ତି। ସମାଜରେ ବ୍ୟାପୁଥିବା ଅଶାନ୍ତି ବିଷୟରେ ଜାଣିବାକୁ ଚାହୁଁଛନ୍ତି। ସେଇକଥା ଆମ ଏଠିବି ଖୋଜିବେ। ହୁଏତ ଆମ ବିରୁଦ୍ଧରେ କିଛି ଲେଖିବେ। ଆମ ଦୋଷ ଦୁର୍ବଳତାକୁ ବାହାରେ ଜଣାଇ ଦେଇ ପାରନ୍ତି। ଏମିତି ବି ହୋଇପାରେ ଯେ, ଯାହା ସେ ଦେଖୁଛନ୍ତି, ଆମେ ସବୁ ଦେଖିପାରୁନାହୁଁ। ଅଳପ ହେଉ କି ବେଶୀ ହେଉ, ତାଙ୍କଠୁ ଆମେ ନିଶ୍ଚୟ କିଛି ଶିଖିପାରିବା। ହୁଏତ ତାଙ୍କର ଏଇ କାମରୁ ଦୁନିଆଁର କିଛି ମଙ୍ଗଳ ହେବ। ଆମେ ତାଙ୍କୁ ରୋକିବା ଠିକ୍ ହେବ ନାହିଁ।"

ଜବାହର ବିଚାରର ସ୍ୱାଧୀନତା ଉପରେ ଭାଷଣ ଦେଉନଥିଲେ। ଏକଥା ବି କେବେ କହୁନଥିଲେ କି ସ୍ୱାଧୀନତାରୁ କିଛି ଖୋଜିବା ଆମର କେତେ ଦରକାରୀ। କିନ୍ତୁ ଭଉଣୀ ଜଣକ ନିଜେ ନିଜେ ସବୁ ବୁଝିଗଲେ। ଜବାହର ନିଜର ବନ୍ଧୁମାନଙ୍କୁ ସିଧାସଳଖ ଜୀବନ ସହିତ ପରିଚୟ କରାଇ ଦେଉଥିଲେ। ଠିକ ବାଟ ପାଇବାରେ ସେ ସେମାନଙ୍କୁ ସାହାଯ୍ୟ କରୁଥିଲେ। ସମସ୍ତେ ବୁଝୁଥିଲେ, ବାଟ ସେମାନେ ଖୋଜି ପାଇଛନ୍ତି।

ବିଦେଶରୁ ଲେଉଟିଲେ, ଯାହା ସବୁ ଦେଖି ଶୁଣି ଆସୁଥିଲେ, ସମସ୍ତଙ୍କୁ କହୁଥିଲେ। ସଂସଦରେ ଦଳର ସଭା ଡାକି ସେମାନଙ୍କୁ ସବୁ ବୁଝାଉଥିଲେ। ମୁଖ୍ୟମନ୍ତ୍ରୀ ମାନଙ୍କୁ ଚିଠି ଲେଖୁଥିଲେ। ସାମ୍ବାଦିକ ମାନଙ୍କୁ ଖୋଲା ସବୁ କହୁଥିଲେ। ସବୁ କଥା ଛପାଯାଇ ଦେଶବାସୀଙ୍କ ପାଖରେ ପହଞ୍ଚି ଯାଉଥିଲା। ଦେଶସାରା ସଭାସମିତି ମାନ ହେଉଥିଲା। ସେଥିରେ ଜବାହର ନିଜେ ଲୋକମାନଙ୍କୁ ସବୁ ବୁଝାଉଥିଲେ। ଏମିତି ସେ ବଡରୁ ବଡ କଥାବି ସବୁ ଲୋକଙ୍କ ପାଖରେ

ପହଞ୍ଚାଇ ଦେଉଥିଲେ ।

ଜବାହର ତିନୋଟି ବଡ ବହି ଲେଖିଛନ୍ତି । ଜେଲ୍‌ରେ ଥିବାବେଳେ ସେ ଏ ତିନୋଟିଯାକ ବହି ଲେଖିଥିଲେ । ଜେଲ୍‌ରେ ଥାଇ ବି ସେ ନିଜକଥା ଅନ୍ୟମାନଙ୍କୁ ବୁଝାଇବା ବିଷୟ ଭାବୁଥିଲେ ।

ଲୋକେ ଜବାହରଙ୍କୁ ଜାଣିବା ପାଇଁ ଚାହୁଁଥିଲେ । ସେ ନିଜ ବିଷୟରେ 'ମୋ କାହାଣୀ' ବହିଟି ଲେଖିଛନ୍ତି । ପଢ଼ିଲେ ଦେଖିବେ, ତାହା କେବଳ ଜବାହରଙ୍କ ନିଜ କାହାଣୀ ନୁହେଁ । ବରଂ ସାରା ଭାରତର ସ୍ୱାଧୀନତା ଲଢ଼ାଇର କାହାଣୀ । ଏହିଭଳି 'ଭାରତ ଆବିଷ୍କାର'ରେ ଭାରତର ଅତୀତ ଉପରେ ଆଲୋକପାତ ହୋଇଛି । ସେଥିରୁ ଆମେ ଆମର ଅତୀତକୁ ଭଲ ଭାବରେ ଜାଣିପାରୁ । ଆଗକୁ ଆସୁଥିବା ସମୟ ପାଇଁ ବି ଆମକୁ ରାସ୍ତା ମିଳିଯାଏ ।



ଆଗର ରାସ୍ତା ଦେଖିବାପାଇଁ ଅତୀତକୁ ଜାଣିବା ନିହାତି ଦରକାର ବୋଲି ଜବାହର ମନେ କରୁଥିଲେ। ତାଙ୍କ ଆଖିରେ ସାରା ଦୁନିଆଁ ଏକ ମନେ ହେଉଥିଲା। ସେଥିପାଇଁ ସେ ଚାହୁଁଥିଲେ ଦେଶବାସୀ ଖାଲି ନିଜର ବିତିଯାଇଥିବା ଦିନ ବିଷୟରେ ନଜାଣି ସାରା ଦୁନିଆଁର ଅତୀତକୁ ଚିହ୍ନନ୍ତୁ। ନିଜ ଝିଅକୁ ଲେଖିଥିବା ଚିଠିରେ ସେ ଦୁନିଆଁର ସବୁ ଦେଶ, ଆଉ ଜାତିର କାହାଣୀ ବର୍ଣ୍ଣନା କରିଛନ୍ତି। ସେଇ ହୋଇଗଲା ଗୋଟିଏ ବହି। ତା'ର ନାମ 'ବିଶ୍ୱ ଇତିହାସ'।

ତାଙ୍କ ବହିରୁ ଏବେ ସାରା ଦୁନିଆଁର ଲୋକ ଲାଭ ଉଠାଉଛନ୍ତି। ସେ ଜଣେ ଭଲ ଶିକ୍ଷକ ଥିଲେ। କେବଳ ନିଜ ଝିଅ ପାଇଁ ବା ଭାରତର ଲୋକମାନଙ୍କ ପାଇଁ ନୁହେଁ, ବରଂ ସାରା ଦୁନିଆ ପାଇଁ ସେ ଥିଲେ ଜଣେ ନିର୍ଭର ଯୋଗ୍ୟ ଶିକ୍ଷକ। ତାଙ୍କର ବିଚାର ଆଲୋଚନାକୁ ଲୋକେ ମନ ଦେଇ ପଢୁଥିଲେ। ତାଙ୍କ ଉପରେ ଭରସା କରୁଥିଲେ। ସେଥିପାଇଁ ସେ ସାରା ଦୁନିଆଁର ''ଚାଚା ନେହେରୁ''।



